# ଶ୍ରେଷ୍ଠ ଗଳ୍ପ

## କମଲେଶ୍ୱର

ଅନୁବାଦ

**ସୁରେନ୍ଦ୍ର ପାଣିଗ୍ରାହୀ**



ଶ୍ରେଷ୍ଠ ଗଳ୍ପ
କମଲେଶ୍ୱରଙ୍କ ନିର୍ବାଚିତ ଗଳ୍ପଗୁଚ୍ଛ
ସୁରେନ୍ଦ୍ର ପାଣିଗ୍ରାହୀଙ୍କ ଓଡ଼ିଆ ଅନୁବାଦ

ପ୍ରକାଶକ : ଟାଇମ୍ ପାସ୍

ପ୍ରଥମ ସଂସ୍କରଣ: ଡିସେମ୍ବର ୨୦୦୬

sreshtha galpa
selected stories of **kamaleswar**
translated into oriya by **surendra pānigrahi**

published & printed by **time pass**
4696 / 98, adimata colony, bhubaneswar-17, india

cover design : **saroj bal**
first edition : december 2006

**35/-**

# ମାନବୀୟ ସଂବେଦନାର ମହାନ କଥାକାରଃ କମଲେଶ୍ୱର



× × × ଏଇ ଦୀର୍ଘ ପଞ୍ଚାବନ ବର୍ଷର କଥାଯାତ୍ରା ବିଷୟରେ ମୁଁ ଚିନ୍ତା କଲେ ମୋ ପିଲାଦିନ ବେଶ୍ ମନେ ପଡ଼େ । ବିଗତ ଦିନର ସ୍ମୃତିସବୁ ମୋତେ ଆଘାତ ଦିଅନ୍ତି । ବ୍ରାଞ୍ଚ ଲାଇନ୍‌ରେ ଟ୍ରେନ୍‌ରେ ଯାତ୍ରା କଲାବେଳେ ଡବାରୁ ବାହାରକୁ ଦେଖେଁ । ଗାଡ଼ି ଚାଲିବା ସହ ସମତାଳ ଦେଇ ରେଳ ଧାରଣା ପାର୍ଶ୍ୱରେ ଥିବା ବୃକ୍ଷଗୁଡ଼ିକ ବିପରୀତ ଦିଗରେ ଧାବମାନ ହୋଇ ପାରିହୋଇ ଯାଉଥିଲେ, କିନ୍ତୁ ଦୂରରୁ ଦେଖା ଯାଉଥିବା ପାହାଡ଼ସବୁ ବେଶ୍ କିଛିକ୍ଷଣ ଧରି ମୋ ସାଥିରେ ରହିବାକୁ ଚାହୁଁଥିଲେ..... ମୋ ନିଜର ବ୍ୟକ୍ତିଗତ ଜୀବନରେ ଠିକ୍ ଏଇଆ ହିଁ ଘଟିଥିଲା ।

× × ×

କାହାଣୀ ଛପା ହୁଏ ନା ଛପେଇ ଦିଆଯାଏ ଏହା ମୋତେ ଅନୁଭୂତ ହୋଇଥିଲା ବେଶ୍ ବିଳମ୍ବରେ । ତାହା ହୁଏତ ଥିଲା 'ସ୍ୱାନ୍ତ ସୁଖାୟ' ନୁହଁ 'ସ୍ୱାନ୍ତ ଦୁଃଖାୟ'ର ସ୍ଥିତି । ଯାହା ଥିଲା ଦୁଃଖଦ, ତାକୁ ଲେଖି ଚାଲିଥିଲି । ଏହା ଥିଲା ମୋ ପାଇଁ ନିଜକୁ ଲେଖା ଯାଉଥିବା ପତ୍ର

ଭଳି, ଆଉ ନିଜକୁ ଲେଖାଯାଉଥିବା ଏଇ ପତ୍ରଗୁଡ଼ିକୁ ମୁଁ ଯେତେବେଳେ ପଢୁଥିଲି ମୋ ମନ ମୋତେ ଚେତେଇ ଦେଉଥିଲା- ହଁ ଠିକ୍... ତୁମେ କିଛି ଭୁଲ୍ ଲେଖିନାହଁ.... ଆଉ ପ୍ରାୟ ଏଇଥିପାଇଁ ନିଜ ରଚନା ପ୍ରତି ମୋର ବିଶ୍ୱାସ ଥିଲା ସୁଦୃଢ଼ ଓ ପ୍ରଗାଢ଼ ।

**-କମଲେଶ୍ୱର**

ମାନବତାର ମହାନ୍ କଥାକାର କମଲେଶ୍ୱରଙ୍କ କଥା ସାହିତ୍ୟ ସହ ମୋର ପରିଚୟ ହୁଏ ୧୯୮୨ ମସିହାରେ । ଶାନ୍ତିନିକେତନରେ ହିନ୍ଦୀ ସାହିତ୍ୟର ଜଣେ ଛାତ୍ର ଭାବେ ତାଙ୍କର କିଛି କାହାଣୀ ପଢ଼ିଥିଲି ।ଆଉ ଏସବୁ ପଢ଼ିଲାବେଳେ ମୋତେ ଲାଗୁଥିଲା ଯେମିତି ତାଙ୍କ କାହାଣୀର ଚରିତ୍ରମାନେ ମୋ ଆଖପାଖରେ ବହୁତ ଦିନ ଧରି ଆତଯାତ ହେଇ ଚାଲିଛନ୍ତି । ଏଇ ମହାନ୍ କଥାକାରଙ୍କର ଜନ୍ମ ହୁଏ ୧୯୩୨ ମସିହାରେ ଉତ୍ତରପ୍ରଦେଶର ମୈନପୁରୀ ଗ୍ରାମରେ । ଏକ କୁଳୀନ ପରିବାରରେ ଜନ୍ମ ଗ୍ରହଣ କରି ବାଲ୍ୟାବସ୍ଥାରୁ ପିତୃବିୟୋଗ, ଭ୍ରାତୃ ବିୟୋଗ, ଦାରିଦ୍ର୍ୟ ଓ ସମୟର ନିର୍ମମ କଷାଘାତ ଆଦି ପ୍ରତିକୂଳ ପରିସ୍ଥିତି ଦେଇ ତାଙ୍କୁ ଗତି କରିବାକୁ ପଡ଼େ । ପୁଣି ଉଚ୍ଚଶିକ୍ଷା ପାଇଁ ଯୋଗ ଦିଅନ୍ତି ଏହ୍ଲାବାଦ ବିଶ୍ୱବିଦ୍ୟାଳୟରେ ଏମ୍.ଏ. ହିନ୍ଦୀ ବିଭାଗରେ । ଘରର ସମସ୍ତ ଦାୟିତ୍ୱ ଓ ନିଜର ପଢ଼ାଖର୍ଚ୍ଚ ତୁଲାଇବା ନିମନ୍ତେ କ୍ରାନ୍ତିକାରୀ ସମାଜବାଦୀ ପାର୍ଟି ଅଫିସରେ କିଛିଦିନ 'ଜନକ୍ରାନ୍ତି' ନାମକ ଖବରକାଗଜ ନିମନ୍ତେ କାମ କରନ୍ତି । ଗାଜିପୁରରେ କୃଷକମାନଙ୍କ ଅତ୍ୟାଚାର, କାନପୁରର ଚମଡ଼ା କାରଖାନାରେ ମଜୁରିଆମାନଙ୍କ ଛଟେଇ ଓ କ୍ରାନ୍ତିକାରୀମାନଙ୍କ ଜୀବନକୁ ନେଇ ସେଠାରେ ସେ ଲେଖିଛନ୍ତି ଅନେକ ଅଗ୍ନିବର୍ଷୀ ରଚନା । ଏହି ସମୟରେ ଭାରତ ହୁଏ ସ୍ୱାଧୀନ । ଶରଣାର୍ଥୀମାନଙ୍କର ଟ୍ରେନ୍ ଆସି ପହଞ୍ଚେ ଏହ୍ଲାବାଦରେ.... ପୁଣି ଏହ୍ଲାବାଦରୁ ଟ୍ରେନ ବିସ୍ଥାପିତମାନଙ୍କୁ ନେଇ ପାକିସ୍ତାନ ଆଡ଼କୁ ମୁହାଁଏ.... । ଦେଶ ବିଭାଜନର ଅଭିଶାପ ସାଙ୍ଗକୁ ଘର ଉଜୁଡ଼ି ଯାଉଥିବାର ଦୁଃଖ.... ଥକାଗ୍ରସ୍ତ ଲୋକମାନଙ୍କର ନିରାଶ ଆଖିର ଲୁହ...... ସାମ୍ପ୍ରଦାୟିକ ଦଙ୍ଗାର କରାଳ ଦୃଶ୍ୟ..... ଘରଦ୍ୱାରା ସବୁକିଛି ହରେଇ ସାରିବା ପରେ ବି ଧର୍ମକୁ ନେଇ ମଣିଷ ମଣିଷ ଭିତରେ ସଂଘର୍ଷ..... ଆଖି ଆଗରେ ଘଟି ଚାଲିଥିବା ଭୟଙ୍କର ରକ୍ତପାତର କଳାଛାଇ..... ମନୁଷ୍ୟ ଏସବୁକୁ ନେଇ ପୁଣି ଆଗେଇ ଚାଲିଚି ଆଗକୁ ଆଗକୁ..... ଭାଙ୍ଗି ଯାଉଥିବା ଅବସ୍ଥାର ନାମ ପାକିସ୍ତାନ.... ମାନବତାର ବିଭାଜନର ନାମ ପାକିସ୍ତାନ.... ପାକିସ୍ତାନ ଏକ ଦେଶର ନାମ ନୁହେଁ..... ଭାଙ୍ଗି ଯାଉଥିବା ସ୍ନେହ, ସୌହାର୍ଦ୍ଦ୍ୟ ଓ ସଂପ୍ରୀତିର ନାମ ପାକିସ୍ତାନ... । ପରବର୍ତ୍ତୀ ଅବସ୍ଥାରେ ଏହିସବୁ ମାନବୀୟ ସମ୍ବେଦନାର ମୂଲ୍ୟବୋଧ ସ୍ଥାନ ପାଏ ତାଙ୍କର କଥା ସାହିତ୍ୟରେ । ଜୀବନାନୁଭବ ଓ ଭାରତ ପାକିସ୍ତାନ ବିଭାଜନର ପୃଷ୍ଠଭୂମିକୁ ନେଇ ସେ ଲେଖନ୍ତି 'କିତ୍‌ନେ ପାକିସ୍ତାନ' ନାମକ ଏକ କାଳଜୟୀ ଉପନ୍ୟାସ ଓ ୨୦୦୩ ମସିହାରେ ଏଇ ପୁସ୍ତକ ନିମନ୍ତେ ଲାଭ କରନ୍ତି କେନ୍ଦ୍ର ସାହିତ୍ୟ ଅକାଦମୀ ପୁରସ୍କାର ।

ତାଙ୍କୁ ପୁରସ୍କୃତ କରିବାକୁ ଚାହୁଁଥିବା ସଂସ୍ଥାର ଯୋଗ୍ୟତା ଉପରେ ପ୍ରଶ୍ନକରି ଏଇ ମାନବାଦୀ କଥାକାର ଜୀବନର ଦୀର୍ଘ ୬୫ ବର୍ଷ ପର୍ଯ୍ୟନ୍ତ ସମସ୍ତ ସମ୍ମାନ ଓ ପୁରସ୍କାରକୁ ବିନୟର ସହ ପ୍ରତ୍ୟାଖ୍ୟାନ କରିଥିଲେ । କମଲେଶ୍ୱରଙ୍କର ସମସାମୟିକ ହିନ୍ଦୀ ସାହିତ୍ୟିକ ଦୁଷ୍ୟନ୍ତ କୁମାର କମଲେଶ୍ୱରଙ୍କର ମହାନ୍ ବ୍ୟକ୍ତିତ୍ୱ ସମ୍ବନ୍ଧରେ ମତ ଦେବାକୁ ଯାଇ କହନ୍ତି- ''ଆପଣ ଯଦି ତାଙ୍କ ସହ ଲଢ଼ିବା ନିମନ୍ତେ ଶହେ ଭାଗ ମାନସିକ ଭାବେ ପ୍ରସ୍ତୁତ ହେଇ ଯାଇଥାଆନ୍ତି, ତାଙ୍କ ସହ ଲଢ଼ିବା ସମ୍ଭବ ନୁହଁ । କାରଣ ନିଜର ଘୋର ବିରୋଧୀମାନଙ୍କୁ ସେ ନିଜର ସରଳ ସୌଜନ୍ୟ, ବୁଦ୍ଧି, ନିଜ ଚକ୍ଷୁର ଚମକ ଓ ଆତ୍ମବିଶ୍ୱାସରେ ପରାଜିତ କରି ଦେଇପାରନ୍ତି । ସେ ଅହଂକାରବାଦୀ ନୁହନ୍ତି, ଅକୁଣ୍ଠିତ ଭାବେ ଖୁବ୍ ସହଜରେ ଆପଣଙ୍କୁ ନିଜର କରି ନେବାର ଶକ୍ତି ତାଙ୍କର ଅଛି ।''

## 'ନୟୀ କହାନୀ' ଆନ୍ଦୋଳନର ପ୍ରମୁଖ କଥାକାର

ହିନ୍ଦୀ ସାହିତ୍ୟରେ 'ନୟୀ କହାନୀ' ପରମ୍ପରାର ପ୍ରାରମ୍ଭିକ ପର୍ଯ୍ୟାୟର ମୂଳ ସୂତ୍ରଧର ଥିଲେ ରାଜେନ୍ଦ୍ର ଯାଦବ, କମଲେଶ୍ୱର ଓ ଦୁଷ୍ୟନ୍ତ କୁମାର ଆଦି ସାହିତ୍ୟିକ ବନ୍ଧୁଗଣ । 'ନୟୀ କହାନୀ'ର ପରମ୍ପରା ପୁରାତନ କାହାଣୀର ଧାରା ମଧ୍ୟରୁ ବାହାରି ଆସି ବ୍ୟକ୍ତି ସ୍ୱାତନ୍ତ୍ର୍ୟ ଓ ବାତାବରଣକୁ ଖୁବ୍ ହାଲ୍କା ଭାବେ ଅଭିବ୍ୟକ୍ତ କରିଥିଲା । ସମସାୟିକ ସମାଜର ଯୁଗଯନ୍ତ୍ରଣା, ବ୍ୟକ୍ତିଗତ ଯନ୍ତ୍ରଣାର ବେଶ୍ ଖୋଲାଖୋଲି ଭାବେ ଅଭିବ୍ୟକ୍ତି କୌଣସି ବାଧାବନ୍ଧନକୁ ମାନି ନଥିଲା । 'ନୟୀ କହାନୀ' ପରମ୍ପରାର ଜଣେ ପ୍ରମୁଖ ଗାଳ୍ପିକ ରାଜେନ୍ଦ୍ର ଯାଦବ କମଲେଶ୍ୱରଙ୍କ ସମ୍ବନ୍ଧରେ କହନ୍ତି, "ବନ୍ଧୁ, ଏଇ ବ୍ୟକ୍ତିଟି ଭିତରେ କେତେ ଷ୍ଟାମିନା ଅଛି ! ସାରାଦିନ ବୁଲିପାରେ, ବଳଦ ଭଳି କାମ କରିପାରେ, ତଥାପି ତା ଶରୀରରେ କୌଣସି ପ୍ରକାରର ଥକ୍କା କିମ୍ବା ଶୈଥିଲ୍ୟ ନାହିଁ ! କେଜାଣି ସେ କେଉଁ ଉପାଦାନରେ ଗଢ଼ା ?"

କମଲେଶ୍ୱରଙ୍କର ମତରେ ତାଙ୍କର ସମଗ୍ର କଥାଯାତ୍ରାକୁ ସାଧାରଣତଃ ତିନିଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମତଃ- ମୈନପୁରୀରୁ ଏହ୍ଲାବାଦ, ଦ୍ୱିତୀୟରେ- ଏହ୍ଲାବାଦରୁ ଦିଲ୍ଲୀ ଓ ତୃତୀୟରେ- ଦିଲ୍ଲୀରୁ ବମ୍ବେ । ୧୯୫୦ ମସିହା ପର୍ଯ୍ୟନ୍ତ ସମସ୍ତ କାହାଣୀ ନିଜ ଗ୍ରାମ ମୈନପୁରୀରେ ଲେଖା ଯାଇଥିଲା । ଅନ୍ୟ କେତେକ ଏହ୍ଲାବାଦରେ ତାଙ୍କ ନିଜ ଗ୍ରାମର ସ୍ମୃତି ଓ ଅନୁଭୂତି ସହ ଅନ୍ତରଙ୍ଗ ଅଭିଜ୍ଞତାକୁ ନେଇ ଲେଖା ହୋଇଥିଲା । ଏହ୍ଲାବାଦରେ ୧୯୪୬-୧୯୫୯ ମସିହା ପର୍ଯ୍ୟନ୍ତ ତାଙ୍କ ରଚନା ପ୍ରକ୍ରିୟାର ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ସମୟ ଥିଲା । ଏହା ଥିଲା 'ନୟୀ କହାନୀ' ଆନ୍ଦୋଳନ । ଏଇ ସମୟ ହିଁ ଶ୍ରୀପତି ରାୟଙ୍କର ପତ୍ରିକା 'କହାନୀ'ର ବାର୍ଷିକ ବିଶେଷାଙ୍କରୁ ଆରମ୍ଭ ହୋଇଥିଲା ।

ଏହାପରେ ଦିଲ୍ଲୀରେ ତାଙ୍କର କାହାଣୀ ରଚନାର ସମୟଥିଲା ୧୯୫୯ରୁ ୧୯୬୬ ପର୍ଯ୍ୟନ୍ତ । 'ନୟୀ କହାନୀ' ଆନ୍ଦୋଳନର ପତ୍ରିକା ସେତେବେଳକୁ ପ୍ରକାଶିତ ହୋଇ ସାରିଥାଏ । ଶ୍ରୀ ଭୈରବ ପ୍ରସାଦ ଗୁପ୍ତ ଏହାର ସମ୍ପାଦକ ଥାଆନ୍ତି । ଏହା ଥିଲା ଗଳ୍ପର ବୈଚାରିକ ଓ

କଳାତ୍ମକ ଉତ୍କର୍ଷତାର ସମୟ । ଭୈରବ ପ୍ରସାଦଙ୍କ ପରେ 'ନୟି କହାନୀ'ର ସମ୍ପାଦନା ଦାୟିତ୍ୱ ନ୍ୟସ୍ତ ହେଇଥିଲା କମଲେଶ୍ୱରଙ୍କ ଉପରେ । ଏବଂ ଏଇଠାରୁ ଜ୍ଞାନରଂଜନ-ରବୀନ୍ଦ୍ର କାଳିଆ ଆଦି ନୂତନ ପିଢ଼ିର ଗାଳ୍ପିକମାନେ ଜନ୍ମ ନେଇଥିଲେ ଏବଂ ହିନ୍ଦୀ କାହାଣୀର ପ୍ରଥମ ଓ ଦ୍ୱିତୀୟ ପିଢ଼ିର ଲେଖକମାନେ କଥାଶିଳ୍ପ ଓ କଥ୍ୟକୁ ଏକ ନୂତନ ଦିଗ ପ୍ରଦାନ କରିଥିଲେ ।

କାହାଣୀ ରଚନାର ତୃତୀୟ ଚରଣ ଥିଲା ମୁମ୍ବାଇ ମହାନଗର । ଯେଉଁଠି ସେ ଶହେରୁ ଉର୍ଦ୍ଧ୍ୱ ହିନ୍ଦୀ ଫିଲ୍ମର ସ୍କ୍ରିପ୍ଟ ରାଇଟର ରୂପେ ବେଶ୍ ପରିଚିତ ହାସଲ କରିଥିଲେ । ଏ କାହାଣୀମାନଙ୍କରେ ଗ୍ଲାମର ସହ ଦେଶୀୟ ଅନୁଭବର ମିଶ୍ରଣ ହୋଇଥିଲା

ପୁଣି ଫିଲ୍ମ ଦୁନିଆଁରୁ ମୋହଭଙ୍ଗ ଓ ଦିଲ୍ଲୀକୁ ପ୍ରତ୍ୟାବର୍ତ୍ତନ । ଏହା ଥିଲା ତାଙ୍କର ରଚନା ପ୍ରକ୍ରିୟାର ଚତୁର୍ଥ ଚରଣ । ଯାହା ଆଜିଯାଏ ବି ନିରନ୍ତର ଗତିରେ ଜାରି ଅଛି ।

## କେନ୍ଦ୍ର ସାହିତ୍ୟ ଅକାଦେମୀ ପୁରସ୍କାର ପ୍ରାପ୍ତ ଉପନ୍ୟାସ 'କିତ୍‌ନେ ପାକିସ୍ତାନ'

କଥା କାହାଣୀର ବାଦ୍‌ଶାହା କମଲେଶ୍ୱରଙ୍କୁ ୨୦୦୩ ମସିହାରେ 'କେନ୍ଦ୍ର ସାହିତ୍ୟ ଅକାଦେମୀ' ପୁରସ୍କାର ମିଳିଥିଲା ନିଜ ପ୍ରସିଦ୍ଧ ଉପନ୍ୟାସ 'କିତ୍‌ନେ ପାକିସ୍ତାନ' ପାଇଁ । ଉପନ୍ୟାସଟି ପ୍ରକାଶିତ ହୁଏ ୨୦୦୦ ମସିହାରେ । ପ୍ରକାଶିତ ହେବା ପୂର୍ବରୁ ଏହା ଚର୍ଚ୍ଚାର ବିଷୟ ହୋଇଥିଲା । ବିଗତ ଏକ ଦଶନ୍ଧି ଧରି ଲେଖକ ଏହାକୁ ଲେଖି ଚାଲିଥିଲେ । ଉପନ୍ୟାସଟିରେ ଐତିହାସିକ ସତ୍ୟ, ମାନବୀୟ ମୂଲ୍ୟବୋଧକୁ ନେଇ ସଂଘର୍ଷ, ଜାତି, ଧର୍ମ, ବର୍ଣ୍ଣକୁ ନେଇ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ବିଭାଜନ, ସାଂପ୍ରଦାୟିକ ସଂପ୍ରୀତିର ବିଖଣ୍ଡନ ସର୍ବୋପରି ଧର୍ମକୁ ନେଇ ପାକିସ୍ତାନ ନାମକ ରାଷ୍ଟ୍ରର ଗଠନ, ବିସ୍ଥାପିତ ମାନଙ୍କର ସମସ୍ୟା ଆଦି ପ୍ରତିଫଳିତ । 'କିତ୍‌ନେ ପାକିସ୍ତାନ' ହେଉଚି ଇତିହାସ ମଧ୍ୟରେ ସାହିତ୍ୟ ଓ ସାହିତ୍ୟ ମଧ୍ୟରେ ଇତିହାସକୁ ଖୋଜିବାର ଏକ ପ୍ରୟାସ । ଯୁଗୀଣ ମୂଲ୍ୟବୋଧକୁ ନେଇ ସାହିତ୍ୟ ଓ ଇତିହାସ ପରସ୍ପର ପରିପୂରକ ହେଇ ଉଠିଛନ୍ତି ଉପନ୍ୟାସଟିରେ ଓ ଜୀବନ ଯନ୍ତ୍ରଣା ଓ ମାନବୀୟ ମୂଲ୍ୟବୋଧର ଚିତ୍ରଣ ଅତ୍ୟନ୍ତ ସୁନ୍ଦର ଅଭିବ୍ୟକ୍ତିକୁ ଆଦରି ନେଇଚି ବିଭିନ୍ନ ପ୍ରସଙ୍ଗର ଚିତ୍ରାଙ୍କନରେ । ଉପନ୍ୟାସଟିର ରଚନା ସମ୍ବନ୍ଧରେ ନିଜର



ଅଭିବ୍ୟକ୍ତି ବଖାଣି ବସନ୍ତି ଔପନ୍ୟାସିକ- ''ଏହା ଥିଲା ମାନବତାର ଦ୍ୱାର ଦେଶରେ ଇତିହାସ ଓ ସମୟର ଏକ କରାଘାତ .... ଏହି ଆଶା ନେଇ ଯେ ସାରା ଦୁନିଆଁରେ ଗୋଟିଏ ପରେ ଆଉ ଗୋଟିଏ ପାକିସ୍ତାନ ତିଆରି ହେବାର ପରମ୍ପରା ଏବେ ସମାପ୍ତ ହେଉ.... ଏଇ ଉପନ୍ୟାସ ହେଉଚି ମୋ ମଧ୍ୟରେ ନିରନ୍ତର ଚାଲୁଥିବା ଏକ ଆନ୍ଦୋଳନର ପରିଣାମ ।'' କମଲେଶ୍ୱର କହନ୍ତି, ''ଉପନ୍ୟାସଟିକୁ ଲେଖିବାବେଳେ ମୋର ଦୁଇଟି ବାଧ୍ୟବାଧକତା ଥିଲା । ପ୍ରଥମତଃ କୌଣସି ନାୟକ କିମ୍ବା ମହାନାୟକ ଏହା ସହ ନଥିଲେ । ସେଥିପାଇଁ ମୋତେ ସମୟକୁ ହିଁ ନାୟକ, ମହାନାୟକ ଓ ଖଳନାୟକ ରୂପେ ଚିତ୍ରିତ କରିବାକୁ ପଡ଼ିଥିଲା । ଦ୍ୱିତୀୟତଃ ଉପନ୍ୟାସଟିକୁ ରଚନା କଲାବେଳେ ବାରମ୍ବାର ମୁଁ ଅନୁଭବ କରୁଥିଲି ଯେମିତି ଏହା ହେଉଚି ମୋର ପ୍ରଥମ ରଚନା..... ପ୍ରାୟ ଏଇଭଳି ଏକ ଅକୁହା ଆକୁଳତା ଏବଂ ଅସମର୍ଥତାବୋଧ ଦେଇ ମୁଁ ଗତି କରୁଥିଲି । ଶେଷରେ ଏଇ ଉପନ୍ୟାସକୁ କେଉଁଠି ନା କେଉଁଠି ସମାପ୍ତ କରିବାର ଥିଲା.... କିନ୍ତୁ ମନରେ ବ୍ୟାକୁଳତା ବର୍ତ୍ତମାନ ବି ଲାଗି ରହିଚି ।'' (କମଲେଶ୍ୱର ୨୯.୧୨.୯୯)

୧୯୮୨ ମସିହାରେ ଶାନ୍ତିନିକେତନର ଛାତ୍ର ଥିବା ଅବସ୍ଥାରୁ ପୁଣି ୨୦୦୪ ଦୀର୍ଘ ୨୨ ବର୍ଷ ଧରି କମଲେଶ୍ୱରଙ୍କୁ ପଢ଼ି ଆସିଥିଲି ବିଭିନ୍ନ ପୁସ୍ତକ ଓ ପତ୍ରପତ୍ରିକାରେ । କାହିଁକି କେଜାଣି ମୋତେ ଯେମିତି ଲାଗୁଥିଲା ତାଙ୍କ ରଚନାମାନଙ୍କରେ ମୋ ଗାଁର ବାତାବରଣଠାରୁ ଆରମ୍ଭ କରି ମୁଁ ନିଜେ ଯେମିତି କେଉଁଠି ନା କେଉଁଠି ଲୁଚି ରହିଛି । ଆଉ ବହୁବାର ଚିନ୍ତା କରିଥିଲି ସେ ହିଁ ହେଉଛନ୍ତି ମୋର ପ୍ରିୟ ଗାଳ୍ପିକ । ତାଙ୍କ ଗଳ୍ପସବୁ ପଢ଼ିଲେ ବହୁତ ଥର ଚିନ୍ତା କରିଥିଲି ଆମ ଓଡ଼ିଆ ଭାଷାରେ ଏସବୁ ଅନୁବାଦ ହେଲେ ଏକ ବୃହତ୍ତର ପାଠକ ବର୍ଗଙ୍କ ନିକଟରେ ପହଞ୍ଚି ପାରିବ । 'କଥା କଥା- କବିତା କବିତା'ର ଶ୍ରାବଣ-୨୦୦୪ ଓ 'ସଚିତ୍ର ବିଜୟା'ର ଶାରଦୀୟ-୨୦୦୪ ପାଇଁ ତାଙ୍କର ଫିଚର, ସାକ୍ଷାତକାର ଓ ଅନୁବାଦ ଗଳ୍ପ ପ୍ରସ୍ତୁତ କରିଥିଲି । ପରବର୍ତ୍ତୀ ସମୟରେ ମୋ ଦ୍ୱାରା ଅନୂଦିତ ତାଙ୍କର ବିଭିନ୍ନ ଗଳ୍ପ ତୀରତରଙ୍ଗ, ଅର୍ପିତା, ଅଭିଯାନ, ମନୋରମା ଆଦି ପତ୍ରିକାମାନଙ୍କରେ ପ୍ରକାଶିତ ହେଇ ସାହିତ୍ୟିକ ତଥା ପାଠକମାନଙ୍କ ଦ୍ୱାରା ଆଦୃତ ହୋଇଥିଲା । ଚିତ୍ରା- ପୂଜାସଂଖ୍ୟା-୨୦୦୬ରେ କମଲେଶ୍ୱରଙ୍କ ଉପରେ ପ୍ରସ୍ତୁତ ମୋର ଫିଚର ଓ ଅନୁବାଦ ସହିତ ଗାଳ୍ପିକ ସରୋଜ ବଳଙ୍କ କୃତ ତାଙ୍କର ଏକ ସାକ୍ଷାତକାର ପ୍ରକାଶିତ ହୋଇ ଅପୂର୍ବ ପାଠକୀୟ ଆଦୃତି ଲାଭ କରିଥିଲା । ଏଥିନିମନ୍ତେ ମୁଁ ସମସ୍ତ ସମ୍ପାଦକ ଓ ସମ୍ପାଦିକାମାନଙ୍କ ନିକଟରେ ଚିରଋଣୀ ।

ଏଇ ମହାନ୍ କଥାକାରଙ୍କ ପାଖକୁ ମୁଁ ଥରେ କେତୋଟି ଓଡ଼ିଆ ଲୋକଗୀତକୁ ହିନ୍ଦୀରେ ଅନୁବାଦ କରି ପଠାଇଥିଲି ଓ ତାଙ୍କର କେତୋଟି ଗଳ୍ପ ଅନୁବାଦ କରିବାକୁ ଅନୁମତି ମାଗିଥିଲି । ସେ ଅତ୍ୟନ୍ତ ଉଦାରତାର ସହ ତାଙ୍କର ଅନୁମତି ପତ୍ରରେ ମୋତେ ଲେଖିଥିଲେ, ''ଶ୍ରୀ ପାଣିଗ୍ରାହୀ, ଭାରତୀୟ ସଂସ୍କୃତି ଓ ପରମ୍ପରା ଆମ ଲୋକସାହିତ୍ୟକୁ ନେଇ ବଞ୍ଚି ରହିଛି । ତୁମେ ଲୋକଗୀତ ଗୁଡ଼ିକୁ ଅନୁବାଦ କରି ଏକ ମହାନ୍ କାମ କରୁଅଛ ।

ମୁଁ ତୁମକୁ ମାତ୍ର ୧୫ଟି ଗଳ୍ପ କାହିଁକି, ସମସ୍ତ ଅନୁବାଦ କରିବା ନିମନ୍ତେ ସ୍ୱୀକୃତି ଦେଉଅଛି ।'' ଜଣେ ମଣିଷ ଭାବରେ ଅତ୍ୟନ୍ତ ଉଦାର ହୃଦୟ ଓ ଉଚ୍ଚମନା ବ୍ୟକ୍ତିତ୍ୱର ଧନୀ କମଲେଶ୍ୱରଙ୍କୁ ଅନୁବାଦ କରିବା ଦ୍ୱାରା ମୁଁ ଅତ୍ୟନ୍ତ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ଏଇ ସୁନ୍ଦର ଗଳ୍ପସବୁକୁ ପାଠକମାନଙ୍କୁ ପରଶି ଦେବାର ଚେଷ୍ଟା କରିଛି ।

ଏଇ ନିକଟରେ ଗାଳ୍ପିକଙ୍କୁ ଭେଟିଥିଲି ତାଙ୍କ ଦିଲ୍ଲୀ ବାସଭବନରେ ଆଉ ଏଇ ସଂକଳନର ସାଫଲ୍ୟ ନିମନ୍ତେ ତାଙ୍କଠାରୁ ଆଶୀର୍ବାଦ ପ୍ରାପ୍ତ ହୋଇଥିଲି । ଏଇ ଅନୁବାଦ ପୁସ୍ତକଟିର ପ୍ରକାଶନ ନିମନ୍ତେ 'ଟାଇମ୍ ପାସ୍'ର ସଂଚାଳକ ସରୋଜ ବଳଙ୍କର ଅଦମ୍ୟ ଉତ୍ସାହ ପାଇଁ ତାଙ୍କୁ ଧନ୍ୟବାଦ ଦେଉଚି । ମୋର ସମସ୍ତ ବନ୍ଧୁ, ଶୁଭେଚ୍ଛୁ ଓ ସମାଲୋଚକମାନଙ୍କ ନିକଟରୁ ସଦିଚ୍ଛା ଭିକ୍ଷା କରିବା ସହ ଶେଷରେ ଏଇ ସଂକଳନଟିକୁ ସମର୍ପି ଦେଉଛି ମାନବତାର ମହାନ୍ କଥାକାର କମଲେଶ୍ୱରଙ୍କ କରକମଳରେ...

**ସୁରେନ୍ଦ୍ର ପାଣିଗ୍ରାହୀ**

ରାହାସ ପୂର୍ଣ୍ଣିମା-୨୦୦୬

# ଲାସ୍

ସହର ସାରା ସଜା ହେଇଥିଲା । କେତେକ ବିଶେଷ ସ୍ଥାନରେ ତୋରଣ ତିଆରି କରାଯାଇଥିଲା । ବିଦ୍ୟୁତ୍ ଖୁଣ୍ଟିରେ ପତାକା ଓ ପାଚେରୀମାନଙ୍କରେ ପୋଷ୍ଟର ବି ଲାଗିଥିଲା । ଭଲେଣ୍ଟିୟର୍‌ମାନେ ବି ବହୁତଦିନ ଧରି ସହରସାରା ପାମ୍ପଲେଟ୍ ବାଣ୍ଟି ଚାଲିଥିଲେ । ଧୀରେ ଧୀରେ ବିକ୍ଷୋଭର ଗତିବିଧି ଖୁବ୍ କ୍ଷିପ୍ର ହୋଇ ଚାଲିଥିଲା । ଲାଗୁଥିଲା ଯେମିତି ରେଲ, ବସ୍, ଉଡ଼ାଜାହାଜ ସେବା ବି ବନ୍ଦ ହେଇଯିବ, ଆଉ ସାରା ସହରରେ ଖୁବ୍ ଜୋର୍ ହରତାଳ ହେବ ଏବଂ ଲକ୍ଷ ଲକ୍ଷ ଲୋକ ଏଇ ବିକ୍ଷୋଭରେ ଅଂଶଗ୍ରହଣ କରିବେ ।

ସହର ବାହାରେ ଗୋଟେ ବିରାଟ ପଡ଼ିଆରେ ଯେମିତି ଗୋଟେ ନଗରୀର କୋଳାହଳ । ଦୂର ଦୂରାନ୍ତରୁ ଦଳକୁ ଦଳ ଲୋକ ଆସି ପହଞ୍ଚୁଥିଲେ । କେତେକ ରିଜର୍ଭ

କରାହେଥିବା ବସ୍‌ରେ... ବସ୍‌ରେ ପତାକା ଲାଗିଥିଲା । ଲୁଗାପଟିରେ ତହସିଲର ନାଁ ଲେଖା ହେଇଥିଲା । କେତେକ ଦଳରେ ସ୍ତ୍ରୀଲୋକ ଓ ପିଲାମାନେ ବି ଥିଲେ । ସ୍ତ୍ରୀ ଲୋକମାନେ ଖାଲି ସମୟରେ ଏଇ ହରତାଳର ଗୀତ ଗାଇ ଚାଲିଥିଲେ ।

କେନ୍ଦ୍ରୀୟ ସମିତି କେତେକ ନୂଆ ସ୍ଲୋଗାନ୍ ତିଆରି କରିଥିଲେ । ଜିଲ୍ଲାସ୍ତରୀୟ ଲୋକମାନେ ସେଇ ସ୍ଲୋଗାନ୍‌କୁ ଆବୃତ୍ତି କରି ଚାଲିଥିଲେ । ସାରା ସହରରେ ଲୋକ ଭର୍ତ୍ତି । ସହରର ସବୁ ରାସ୍ତା, ହୋଟେଲ, ଧର୍ମଶାଳା, ଚଟିଘର ଆଉ ସାଧାରଣ ବନ୍ଧୁବାନ୍ଧବଙ୍କ ଘରେ ବିକ୍ଷୋଭକାରୀମାନେ ହିଁ ଭର୍ତ୍ତି ହେଇଯାଇଥିଲେ ।

ଦି'ମାସ ଆଗରୁ ଦରଜୀମାନଙ୍କୁ ପତାକା ଓ ଟୋପି ସିଲେଇ କରବାର ଠିକା ଦିଆଯାଥିଲା । ପୋଷ୍ଟର ଏବଂ ଲିଫ୍‌ଲେଟ୍ ତିଆରି କରିବା କାମ ସହରର ସାତୋଟି ଛାପାଖାନାକୁ ଦିଆଯାଇଥିଲା । ଯେଉଁ ଲିଫ୍‌ଲେଟ୍‌ରେ ଦାବି ଓ ସ୍ଲୋଗାନ୍ ଲେଖାଯାଇଥିଲା ସେସବୁ ପ୍ରଦର୍ଶନକାରୀମାନଙ୍କୁ ବାଣ୍ଟି ଦିଆଯାଇଥିଲା । ପୋଲିସର କାର୍ଯ୍ୟକଳାପ ବି ଖୁବ୍ ବଢ଼ି ଯାଇଥିଲା । ଯାତାୟତ ଦାୟିତ୍ୱରେ ଥିବା ପୋଲିସ୍ ବି ନାଗରିକମାନଙ୍କର ସୁବିଧା ନମନ୍ତେ ନିର୍ଦ୍ଦେଶ ଜାରି କରି ଦେଇଥିଲେ ଯେ- ଶୋଭାଯାତ୍ରା ବାହାରିବା ଦିନ ନାଗରିକମାନେ କେଉଁ କେଉଁ ସଡ଼କକୁ ବ୍ୟବହାର କରିବା ମନା... ନାଗରିକମାନେ ନିଜ ଗାଡ଼ିଗୁଡ଼ିକୁ ସୁରକ୍ଷିତ ସ୍ଥାନରେ ମଧ୍ୟ ରଖନ୍ତୁ ।

ଶୋଭାଯାତ୍ରାର ବିଶାଳତା ଅନୁଭବ କରି ପୋଲିସ କମିଶନର ପି.ଏ.ସି.ଙ୍କୁ ଡାକିଥିଲେ । ଯେଉଁ ଯେଉଁ ସଡ଼କବାଟ ଦେଇ ଶୋଭାଯାତ୍ରା ଯିବାର ଥିଲା, ସେଠାର କୋଠା ଉପରେ ସଶସ୍ତ୍ର ପୋଲିସ ମୁତୟନ କରାଯାଇଥିଲା । ସଡ଼କର ଦୁଇପାଖରେ କେବଳ ଲାଠିଧାରୀ ପୋଲିସ୍‌ମାନେ ପଇଁତରା ମାରୁଥିଲେ । ଯେମିତିକି ପ୍ରଦର୍ଶନକାରୀମାନଙ୍କର କିଛି ଅସୁବିଧା ନହୁଏ । ଏସବୁର ବ୍ୟବସ୍ଥା ସ୍ୱୟଂ ପୋଲିସ କମିଶନରଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ହିଁ ହେଇଥିଲା ।

ନିଜର ସତର୍କ ସୁରକ୍ଷା ବ୍ୟବସ୍ଥା ସମ୍ବନ୍ଧରେ ପୋଲିସ କମିଶନର ଯେତେବେଳେ ମୁଖ୍ୟମନ୍ତ୍ରୀଙ୍କୁ ଜଣେଇବାକୁ ଯାଇ ତାଙ୍କ ପାଖରେ ପହଞ୍ଚିଲେ, ତାଙ୍କର ସମସ୍ତ ଚିନ୍ତା ଦୂର ହେଇଗଲା । ମୁଖ୍ୟମନ୍ତ୍ରୀଙ୍କ ଚେହେରାରେ କୌଣସି ପ୍ରକାରର ବ୍ୟସ୍ତତା ନଥିଲା । ସେ ସବୁଥର ଭଳି ବେଶ୍ ଖୁସିଥିଲେ । ଘରୋଇ ବିଭାଗର ମନ୍ତ୍ରୀ ବି ଓଠ ଚାପି ହସୁଥିଲେ । ମୁଖ୍ୟମନ୍ତ୍ରୀ କଛି କହିବା ମାତ୍ରେ ପୋଲିସ କମିଶନର ନିଜ ତରଫରୁ ସଫେଇ ଦେଇ କହିଲେ, ''ଦୁଇ ହଜାର ଲୋକାଲ୍ ଫୋର୍ସ୍ ଅଛନ୍ତି । ପାଞ୍ଚ ଶହ ପି.ଏସ୍.ସି., ଚାରଶହ ଜିଲ୍ଲାମାନଙ୍କରୁ ଆସିଛନ୍ତି ଆଉ ତିନିଶହ ରେଲୱେରୁ, ଅଶୀଜଣ ଜଓ୍ୱାନ୍‌ଙ୍କୁ ଜେଲ୍ ବିଭାଗରୁ ଅଣାଯାଇଛି ଆଉ ଦୁଇଶହ ହୋମଗାର୍ଡ଼ ବି ଅଛନ୍ତି । ଏମାନଙ୍କ ମଧ୍ୟରୁ ଆଠଜଣ ହେଉଛନ୍ତି ଆର୍ମଡ୍ । ପ୍ରତ୍ୟେକ ଥାନାମାନଙ୍କରେ କଡ଼ା ସୁରକ୍ଷା ବ୍ୟବସ୍ଥା । ଷୋଳଶହ ଲାଠି ଗତ ସପ୍ତାହରେ ମଗାଇ ଅଣାଯାଇଛି । ସାଢ଼େ ଚାରିଶହ ଫୋର୍ସ ହେଉଛନ୍ତି ସିଭିଲିୟାନ୍ ।''

ପୋଲିସ କମିଶନର କେବଳ କହି ଚାଲିଥିଲେ, କିନ୍ତୁ ମୁଖ୍ୟମନ୍ତ୍ରୀ ବେଶୀ ଉତ୍ସୁକତାର

ସହ ଶୁଣୁନଥିଲେ । ଘରୋଇ ବିଭାଗର ମନ୍ତ୍ରୀଙ୍କର ବି ଉତ୍ସାହ ନଥିଲା । କମିଶନର କିଛିଟା ଆଶ୍ଚର୍ଯ୍ୟ ହେଲେ । ସେ ଟିକିଏ ରହିଯାଇ ଦୁଇଜଣଙ୍କ ଆଡ଼କୁ ଚାହିଁବାରୁ ମୁଖ୍ୟମନ୍ତ୍ରୀ ନିଜ ଚଷମା ସଫା କରୁ କରୁ କହିଲେ, 'ଓଃ ଆପଣ ମିଛଟାରେ ଏତେ ପ୍ରକାରର ବ୍ୟବସ୍ଥା କଲେ !'

'ଏଇ ବିରୋଧୀଦଳମାନଙ୍କୁ କିଛି ଭରସା ନାହିଁ... ଯଦି ଆମେ ବନ୍ଦୋବସ୍ତ ନ କରିବା ତେବେ... କମିଶନର କହି ଚାଲିଥିଲେ ।'

'ଶୋଭାଯାତ୍ରା ଶାନ୍ତିପୂର୍ଣ୍ଣ ହେବ'– ମୁଖ୍ୟମନ୍ତ୍ରୀ କହିଲେ ।

'କିଏ ଜାଣେ'... କମିଶନର କହିଲେ... ମୋତେ ଲାଗୁଛି...

ମୁଖ୍ୟମନ୍ତ୍ରୀ କଥା କାଟି କହିଲେ- 'ବେଶୀ ହାହୋଲ୍ଲା ହେବନି, କିନ୍ତୁ ଗୁଣ୍ଡାମାନଙ୍କ ଉପରେ ନଜର୍ ରଖିଥିବ ।'

'ଦୁଇ ତୃତୀୟାଂଶରୁ ଅଧିକ ଗୁଣ୍ଡାମାନଙ୍କୁ ଗିରଫ କରାଯାଇଛି... ଏହା ତ ତିନିଦିନ ଆଗରୁ କରାଯାଇଛି । କେତେଜଣଙ୍କୁ ଆଜି ଦି'ପହରେ ବନ୍ଦକରି ରଖାଯିବ ।'

'ଠିକ୍ ଅଛି ।'

'ତା'ହେଲେ ମୋତେ ଯିବାକୁ ଅନୁମତି ଦିଅନ୍ତୁ' କମିଶନର କହିଲେ ।

'ଠିକ୍ ଅଛି' ମୁଖ୍ୟମନ୍ତ୍ରୀ କହଲେ- 'ବୁଦ୍ଧିର ସହ କାମ କରନ୍ତୁ, ମୁଁ ଭାବୁଛି ଶୋଭାଯାତ୍ରାର କର୍ମକର୍ତ୍ତାମାନଙ୍କୁ ଦେଖାକରି ଯାଆନ୍ତୁ' । ତିନିଜଣ ଯାକ ଏମ୍.ଏଲ୍.ଏ. ହଷ୍ଟେଲରେ ଆସି ଅଛନ୍ତି ।

'ହଁ ଆଜ୍ଞା, ମୁଁ ଜାଣିଚି, କିନ୍ତୁ ସେମାନେ ବର୍ତ୍ତମାନ ପ୍ରାୟ ମଞ୍ଚ ଉପରକୁ ଯାଇ ସାରିବେଣି... । କମିଶନର ସାମାନ୍ୟ ସଂକୋଚର ସହ କହିଲେ... ଆଉ ସେଠି ଯାଇ ସେମାନଙ୍କୁ ଭେଟିବା ମୋ ମତରେ ଠିକ୍ ହେବନି ।

ସେମାନେ ଏଇଠି ଥିବେ... ଆରେ ଭାଇ... ଆପଣ ଜାଣିନାହାନ୍ତି... ସେମାନଙ୍କ ଭିତରୁ କ୍ରାନ୍ତି ମୋ ସହ ଜେଲ୍‌ରେ ଥିଲେ । ଖୁବ୍ ଆଦର୍ଶବାଦୀ ଲୋକ... ପ୍ରଖର ଓ ଚାଲାକ । ଏଭଳି ବିରୋଧୀମାନଙ୍କୁ ତ ମୁଁ ମୁଣ୍ଡରେ ବସେଇଥାଏ । ତାଙ୍କର ଗୋଟେ ଦୁର୍ବଳତା ଅଛି- ନିଦ । ତାଙ୍କ କାନପାଖରେ ଭେରୀ ବଜେଇଲେ ବି ସେ ନଅଟା ଆଗରୁ ଉଠିବେନି । ଜେଲ୍‌ରେ ବି ଏଇ ଅଭ୍ୟାସ ଥିଲା । ସତ୍ୟାଗ୍ରହ ଆନ୍ଦୋଳନ ସମୟରେ ବି... ତାଙ୍କର ନିଦ ସମ୍ପୂର୍ଣ୍ଣ ହେବା ଦରକାର... ଆଉ ଏବେବି ସେଇୟା ଥିବେ । ମୁଖ୍ୟମନ୍ତ୍ରୀ ପ୍ରଶଂସା କରିସାରି କହଲେ, 'ବର୍ତ୍ତମାନ ଆନ୍ଦୋଳନର କଥା, ସେଥିପାଇଁ ହୁଏତ ଦେଖା କରିବାକୁ ଆସିନାହାନ୍ତି । ନହେଲେ ସବୁବେଳେ ଆସନ୍ତି... ଖୁବ୍ ମଜାଦାର୍ ଲୋକ । ମୁଁ ତ ତାଙ୍କୁ ଖୁବ୍ ସମ୍ମାନ କରେ ।

'ଏ ପାର୍ଟି ପଲ୍‌ଟିକ୍ସକୁ କ'ଣ କୁହାଯିବ ଆଜ୍ଞା ! କାନ୍ତିଲାଲ ବାବୁ ତ ଆମ ସରକାରରେ ରହିବା କଥା... ଗୃହମନ୍ତ୍ରୀ ଦୁଃଖର ସହ କହିଲେ ।

'ନିଶ୍ଚିତ'... ମୁଖ୍ୟମନ୍ତ୍ରୀ କହିଲେ – 'ବୁଲି ଆସନ୍ତୁ, ଯଦି ଥିବେ ତ ଥିବେ... ନହେଲେ ମଞ୍ଚ ପାଖକୁ ଯିବାର ଆବଶ୍ୟକତା ନାହିଁ । ଦେଖାଯଦି ହୁଅନ୍ତି ମୋ ନମସ୍କାର ଜଣେଇଦେବେ ।'

ପୋଲିସ୍ କମିଶନର ନୂଆହେଇ ଆସିଥିଲେ । ଖୁବ୍ ସଂକୋଚର ସହ କହିଲେ, 'ସାର୍, ଆନ୍ଦୋଳନକାରୀମାନେ ଆପଣଙ୍କ ପୁତ୍ତଳିକା ଦାହ କରିବେ, ଏ ବିଷୟରେ...

'ଆରେ ଠିକ୍ ଅଛି । ସେମାନଙ୍କୁ ଜଳେଇବାକୁ ଦିଅ... ଏହାଦ୍ୱାରା ତୁମ ଆଇନ ଭଙ୍ଗ ହେଉଚି କି ? ଯାହା ଇଚ୍ଛା ତାଙ୍କର କରିବାକୁ ଦିଅ... ବାସ୍ ଆପଣଙ୍କର ଏସବୁ ଦାୟିତ୍ୱ ।' ମୁଖ୍ୟମନ୍ତ୍ରୀ ଏହାକହି ଚେୟାରରୁ ଉଠି ଛିଡ଼ାହେଲେ ।

ଚାରିଟାବେଳେ ଛକ ନିକଟରୁ ଶୋଭାଯାତ୍ରା ବାହାରିଲା । ଖୁବ୍ ବିରାଟ ଆୟୋଜନ । ସବା ଆଗରେ ପତାକା ଓ ବିଗୁଲ୍ । ତାଙ୍କ ପଛରେ ଶୋଭାଯାତ୍ରାର ଅଭିଯାନ ଗୀତ ଗାଉଥିବା ଜନତା । ତାଙ୍କ ପଛରେ ଦାବି ବିଷୟକ ବ୍ୟାନର ଧରି ଚାଲିଥିବା ମହିଳାମାନେ । ସେମାନଙ୍କ ପଛରେ ହଜାର ହଜାର ସଂଖ୍ୟାରେ ପ୍ରଦର୍ଶନକାରୀ ଜନତା । ବିଭିନ୍ନ ସ୍ଥାନରୁ ଲୋକମାନେ ଆସିଥାଆନ୍ତି । ସମସ୍ତଙ୍କ ମୁଣ୍ଡରେ ଟୋପି । ହାତରେ ଛୋଟ ଲାଉଡ଼ସ୍ପିକର ଧରି ସ୍ଲୋଗାନ୍ ଦେଉଥିବା କର୍ମୀମାନେ ବି ଥିଲେ । ମଝିରେ ପତାକା ସଜ୍ଜିତ ଜିପ୍ ଉପରେ କାନ୍ତିଲାଲ, ତାଙ୍କ ସାଥି ନେତା ଓ ଅନ୍ୟକିଛି ବିଶେଷ ବ୍ୟକ୍ତି ବି ଥିଲେ ।

ଶୋଭାଯାତ୍ରା ଆଗେଇ ଚାଲିଥିଲା । ସମଗ୍ର ସହର ସ୍ତମ୍ଭୀଭୂତ । ଏତେଲୋକ ହଠାତ୍ କେଉଁଠୁ ଆସିଲେ । ସମସ୍ତେ ଆଶ୍ଚର୍ଯ୍ୟ ଚକିତ । ପ୍ରକୃତରେ ବିଶ୍ୱାସ ହେଉନଥିଲା । ଯେ ଏତେମାତ୍ରାରେ ଲୋକମାନେ ଜୀବିତ ଅଛନ୍ତି । ଯେଉଁମାନେ ଏବେବି ଏଇ ଧାରାରେ ବିଶ୍ୱାସ କରନ୍ତି । ଖଚାଖଚ୍ ଭିଡ଼ଭାଡ଼ ଭିତରେ ଅମାପ ଶୋଭାଯାତ୍ରାରେ ଲୋକମାନେ ଆଗେଇ ଚାଲିଥିଲେ ଆଗକୁ ଆଗକୁ । ବଡ଼ ବଡ଼ ସମ୍ବାଦପତ୍ରର ଫଟୋଗ୍ରାଫରମାନେ କୋଠାବାଡ଼ି ଉପରେ ଚଢ଼ି ଶୋଭାଯାତ୍ରାର ଚିତ୍ର ଉତ୍ତୋଳନ କରିବାରେ ବ୍ୟସ୍ତ ଥିଲେ । କେତେକ ବିଦେଶୀ ଫଟୋଗ୍ରାଫର ଏଭଳି ଏକ ଜନସମାବେଶକୁ ଦେଖି ଆଶ୍ଚର୍ଯ୍ୟଚକିତ ଥିଲେ । ସେମାନେ ଗଣତନ୍ତ୍ରର ଶକ୍ତି ବିଷୟରେ ପଦେ ଅଧେ କହି ପୁଣି ନିଜ କାମରେ ଲାଗିଥିଲେ । ସେମାନେ ଆଦିବାସୀମାନଙ୍କର ଶୋଭାଯାତ୍ରାର ଫଟୋ ବେଶୀ ଉଠାଉଥିଲେ । ସରକାରୀ ଫିଲ୍ମସ ଡିଭିଜନର ଷ୍ଟାଫ୍‌ମାନେ ନିଜ ନିଜ କାମରେ ଲାଗିଥିଲେ ।

ଲମ୍ବା ସଡ଼କ ଦେଇ ଯାଉଥିବା ପଟୁଆରର ଦୃଶ୍ୟ ବିଚିତ୍ର ଥିଲା । ଲକ୍ଷ ଲକ୍ଷ ପାଦ ହିଁ ପାଦ, ଲକ୍ଷ ଲକ୍ଷ ମସ୍ତକ ହିଁ ମସ୍ତକ । ହଜାର ହଜାର ପତାକା ଓ ଉତ୍ସାହିତ ରେରେକାର କରୁଥିବା ଜନସମୁଦ୍ରର ଗର୍ଜନ ତର୍ଜନ । ଆଗ ପଛ କିଛି ଆଖିକୁ ଦିଶୁନି, ମାଇଲ୍ ମାଇଲ୍ ପର୍ଯ୍ୟନ୍ତ ଅଜଗର ଭଳି ମାଡ଼ି ଚାଲିଥିବା ଶୋଭାଯାତ୍ରା ।

ହଠାତ୍ ବିଧ୍ୱଂସର ଲୀଳା ସଂଘଟିତ ହେଲା... ଶୋଭାଯାତ୍ରାର ଅଗ୍ରଭାଗରେ ଚାଲିଲା ଦଉଡ଼ ଧାପଡ଼ । ଶୋଭାଯାତ୍ରା ଭାଙ୍ଗିଦେଇ ଯିଏ ଯୁଆଡ଼େ ପାରିଲେ ଜୀବନ ବିକଳରେ

ଦୌଡ଼ିବାରେ ଲାଗିଲେ । ଚାରିଆଡ଼େ ହୃତ୍‌କମ୍ପ ଖେଳିଗଲା । କୋଠାବାଡ଼ିର ଝର୍କା ଓ ଦୋକାନ ବଜାରର ଦୁଆର ଧଡ଼ାଧଡ଼ ବନ୍ଦ ହେବାରେ ଲାଗିଲା । ପଟୁଆର ଭାଙ୍ଗିଗଲା ଓ ଚିତ୍କାର କରି ଜନତା ପଳାଇବାରେ ଲାଗିଲେ । ଧୂଆଁର ସମୁଦ୍ର ଭିତରେ ଯେମିତି ଲକ୍ଷ ଲକ୍ଷ ଲୋକ କେବଳ ଉବୁଟୁବୁ ହେଉଥିଲେ ! ପଡ଼ିଯାଉଥିଲେ, ଉଠୁଥିଲେ ଓ ପୁଣି ଦୌଡ଼ିବାରେ ଲାଗିଥିଲେ ଲୋକମାନେ । ଦଳି ଚକଟିଯାଇଥିବା ଓ ଗୋଡ଼ହାତ ଭାଙ୍ଗି ଯାଇଥିବା ଲୋକମାନେ, ଚିତ୍କାର କରୁଥିଲେ, ଜୋର୍‌ରେ ଡାକୁଥିଲେ, ହୁଂକାର ଦେଉଥିଲେ ଓ ଆର୍ତ୍ତନାଦ କରୁଥିଲେ...

ଦେଖୁ ଦେଖୁ ସବୁକିଛି ଘଟିଯାଇଥିଲା । ସଡ଼କ ଉପରେ କେବଳ ଜୋତା, ଚପଲ, ପତାକା ଏବଂ ଦାବିଲେଖାଥିବା ପୋଷ୍ଟରମାନ ପଡ଼ିଥିଲା । ଛିଣ୍ଡା ଲୁଗା, ଟୋପି ଏବଂ ଭଙ୍ଗା ପତାକା ସବୁ ଏଣେ ତେଣେ ବିଛାଡ଼ିହେଇ ପଡ଼ିଥିଲା ।

କିଛି ଜାଣିହେଉ ନଥିଲା ଯେ ଏ ବିଧ୍ୱଂସର ଲୀଳା କେମିତି ସଂଘଟିତ ହେଲା ? କାହିଁକି ହେଇଥିଲା ? ପୋଲିସ ଗାଡ଼ିରେ ଦଙ୍ଗାକାରୀ ଓ ଆହତମାନେ ଭର୍ତ୍ତି ହେଇଯାଇଥିଲେ । ଆହତମାନଙ୍କୁ ଡାକ୍ତରଖାନାରେ ଭର୍ତ୍ତି କରାଗଲା, ଦଙ୍ଗାକାରୀମାନଙ୍କୁ ଦଶ କିଲୋମିଟର ଦୂରରେ ଛାଡ଼ି ଦିଆଗଲା । ସେମାନେ ଗୁଣ୍ଡା ନଥିଲେ, ଗୁଣ୍ଡାମାନଙ୍କୁ ପ୍ରଥମରୁ ହାଜତରେ ବନ୍ଦକରି ରଖା ହେଇଥିଲା ।

ବହୁତ ଲୋକ ଆଘାତପ୍ରାପ୍ତ ହେଇଥିଲେ । ନିଜ ନିଜ ଭିତରେ ଦଳାଚକଟା ହେଇଥିଲା । ପୋଲିସ ଗୁଳି ଚଳାଇଥିଲା କିନ୍ତୁ ଫାଙ୍କା ଗୁଳିଚାଳନା । ତାଙ୍କ ଗୁଳିରେ ଜଣେବି କେହି ଆହତ ହେଇନଥିଲେ । କେବଳ ଗୋଡ଼ହାତ ଭାଙ୍ଗି ଯାଇଥିଲା ଯାହା ।

ସମଗ୍ର ସହର ସ୍ତବ୍ଧ ହେଇଯାଇଥିଲା । ଆଶ୍ଚର୍ଯ୍ୟର କଥା ଥିଲା ଯେ, ଏତେବଡ଼ ଦୁର୍ଘଟଣାରେ କେବଳ ଗୋଟିଏ ଲାସ୍ ପଡ଼ିଥିଲା ସେଠାରେ । ସେ ଲାସ୍‌ବି ଅକ୍ଷତ ଅବସ୍ଥାରେ ଥିଲା । ସେଥିରେ ଗୁଳି ବି ବାଜିନଥିଲା କିମ୍ବା କ୍ଷତଚିହ୍ନ ବି ନଥିଲା ।

ପୋଲିସ ଚାରିପଟୁ ଘେରାଉ କରିସାରିଥିଲା । ପୋଲିସ କହୁଥିଲା ଯେ ଲାସ୍ ଥିଲା କାନ୍ତିଲାଲଙ୍କର । କାନ୍ତିଲାଲ୍ ଏକଥା ଶୁଣି ଆଶ୍ଚର୍ଯ୍ୟ ହେଲେ । ସେଇ ଭୟଙ୍କର ଦୁର୍ଘଟଣା ଓ ଦଉଡ଼ାଧାପଡ଼ା ପରେ ପରେ ପ୍ରକୃତିସ୍ଥ ହେଇ କଛିକ୍ଷଣପରେ ସେଠାରେ ପହଞ୍ଚିଲେ । ଶବକୁ ଦେଖିବା ମାତ୍ରେ କାନ୍ତିଲାଲ ଅତ୍ୟନ୍ତ ଉତ୍ସାହର ସହ କହିଲେ, 'ଏହା ମୁଖ୍ୟମନ୍ତ୍ରୀଙ୍କର ଲାସ୍ ।'

ଘଟିଯାଇଥିବା ଦୁର୍ଘଟଣାର ଆକଳନ କରିବା ପାଇଁ ମୁଖ୍ୟମନ୍ତ୍ରୀ ବି ବାହାରି ଆସିଥିଲେ । ସେ ଏକଥା ଶୁଣି ତରତରରେ ସେଠାରେ ପହଞ୍ଚିଲେ । ଖୁବ୍ ସତର୍କତାର ସହ ଲାସ୍‌କୁ ଦେଖିଲେ ଓ ହସି ହସି କହିଲେ, 'ନା । ଏ ଲାସ୍ ମୋର ନୁହଁ ।'

# ଯାହା ଲେଖି ହୁଏନା

ପ୍ରତ୍ୟେକ ବ୍ୟକ୍ତି ନିଜ ଇତିହାସ ସହ କେତେ ଏକାନ୍ତ...ସତେ... । ବାରମ୍ବାର ସେଇକଥା ହିଁ ମନ ଭିତରେ ଉଙ୍କି ମାରିଥାଏ । ଆଉ ଏଇ କଥା ଭାବିଲେ ମନେ ପଡ଼େ ସୁଦର୍ଶନା । ସେ ହିଁ ତ ସେଦିନ କହିଥିଲା 'ଚନ୍ଦର୍ ! ଏ ସବୁ ସ୍ମୃତିର ଆଉ ଆମ ପାଇଁ କିଛି ମୂଲ୍ୟ ନାହିଁ, ଯାହାକୁ ମୁଁ କାହାକୁ କହିବି ପାରିବିନି, ସେଥିପାଇଁ ତ ମୁଁ ଏବେ ଖୁବ୍ ଏକା ଏକା...'

'ମୋତେ କହିପାରବନି ?' ମୁଁ ପଚାରିଲି ।

'ମିଛ କହିଲେ ଯଦି କେହି ଖୁସି ହେଇପାରିବ, ଯେତେ ପାରିବି କହିବି, କିନ୍ତୁ ସତ ତ କେହି ପାଟି ଫିଟେଇ କାହାରିକୁ କହିଦେବା ସମ୍ଭବ ହିଁ ନୁହଁ । ପ୍ରତ୍ୟେକ ବ୍ୟକ୍ତି ପାଖରେ କିଛି ଏମିତି କଥା ଅଛି ଯାହା କହିହେବନି, କାହା ଆଗରେ କହିହେବନ ବି...। ତା'

ଆଖିରେ ଛାଇଭଳି ସବୁ କଥା ଭାସି ଉଠୁଥିଲା ଆଉ ସେ ଝର୍କା ପାଖରେ ଛିଡ଼ାହେଇ ବାହାରେ ଉଡୁଥିବା ଧୂଳି ଓ ବଗମାନଙ୍କୁ ଚାହିଁ ରହିଥିଲା ।

ମୁଁ କେବଳ ଚୁପ୍‌ଚାପ୍ ବସିଥିଲି । ବଡ଼ ଅଜବ ବାତାବରଣ । ସାରା ଘରେ ଉଦାସ ବାତାବରଣ । ଯେଉଁ ରୁମ୍‌ରେ ଆମେ ବସିଥିଲୁ, ଠିକ୍ ତା' ପାଖ ଘରେ ଥିଲେ ସୁଦର୍ଶନାର ପତି- ମହେନ୍ଦ୍ର ।

ସକାଳୁ ଚାହା ପିଇବାକୁ ଆମେ ସମସ୍ତେ ଏକତ୍ରିତ ହେଇଥିଲୁ । ମହେନ୍ଦ୍ର ଚୁପ୍‌ଚାପ୍ ଥିଲେ । କେବଳ ସେ କାହିଁକି, ସମସ୍ତେ ଥିଲେ ନୀରବ । ଚୁପ୍‌ଚାପ୍ ରହ ନିଜର ହାବଭାବକୁ ଲୁଚେଇଦେବାର ବି ସୁଯୋଗ ଥିଲା । ଯଦି ସୁଦର୍ଶନାଙ୍କର ପିତାଙ୍କ ମୃତ୍ୟୁ ଭଳି ଏକ ଘଟଣା ଘଟି ନଥାନ୍ତା, ତେବେ ମୁଁ କମ୍ବା ତା' ପତି ମହେନ୍ଦ୍ର, ଆମେ କେହି ଏଠି ନଥାଆନ୍ତୁ । ଏକ ଭିନ୍ନ ପ୍ରକାରର ବାଧ୍ୟବାଧକତାରେ ବାନ୍ଧି ଯାଇଥିଲୁ ଆମେ । ଆମେ ତିନିହେଁ ଜଣେ ଅନ୍ୟଜଣକୁ ବେଶ୍ ଭଲଭାବେ ଜାଣିଥିଲୁ । ଭିତରେ ଭିତରେ ଜଣେ ଅନ୍ୟଜଣକୁ ଘୃଣା ବ କରୁଥିଲୁ । ପୁଣି ତା' ସହ ଆମମାନଙ୍କର ଏମିତି କଛି ବାଧ୍ୟବାଧକତା ଥିଲା ଯେ ନିଜ ନିଜ ଭିତରେ ଖୋଲାଖୋଲି କଥା ବି ହେଇପାରୁ ନଥିଲୁ ।

ଏଇ ପାଞ୍ଚବର୍ଷ ଭିତରେ, ଯେବେଠାରୁ ସୁଦର୍ଶନା ନିଜ ସ୍ୱାମୀ ମହେନ୍ଦ୍ରଙ୍କୁ ଛାଡ଼ି ଚାଲିଯାଇଥିଲା । ମୋର ତାଙ୍କ ସହ ଭେଟ ହେଇନଥିଲା । ସାକ୍ଷାତର ପ୍ରଶ୍ନ ବି ନଥିଲା । ମହେନ୍ଦ୍ରକୁ ସର୍ବଦା ଏଇଭଳି ସନ୍ଦେହ ଥିଲା ଯେ ସୁଦର୍ଶନା ମୋରି ପାଇଁ ହିଁ ତାଙ୍କୁ ଛାଡ଼ି ଚାଲିଯାଇଚି...

ଆଉ ମୁଁ ଯେବେ ମୋ ବିଷୟରେ ଚିନ୍ତା କରେ, ଭାବେ ହଁ ଏଇଆ ହିଁ ହେଇଥାଆନ୍ତା, ହୁଏତ କେତେଦିନ ପାଇଁ ମୁଁ ବଦନାମ୍ ହେଇଥାଆନ୍ତି, କିନ୍ତୁ ସୁଦର୍ଶନାର ଆଖିରୁ ସବୁଦିନ ପାଇଁ ଉଦାସିଆ ଭାବ ସମାପ୍ତ ହେଇପାରିଥାଆନ୍ତା ।

ତା' ବାପାଙ୍କର ଦେହାନ୍ତ ହେବାପରେ ଯେତେବେଳେ ମହେନ୍ଦ୍ର ଓ ମୁଁ ଉଭୟେ ପହଞ୍ଚିଲୁ, ଲାଗିଲା ଯେମିତି ଆମେ ଉଭୟେ ସୁଦର୍ଶନାକୁ କିଛି ମାଗିବାକୁ ଆସିଛୁ । ମୃତ୍ୟୁରେ ସମବେଦନା ଜଣାଇବାକୁ ଆସିବା ଯେମିତି ଏକ ବାହାନା ଥିଲା ମାତ୍ର । କେବଳ ମୁଁ ଚେଷ୍ଟା କରିଥିଲି ଯେମିତି ମୋର ଶୋକ ପ୍ରକାଶ ଅତ୍ୟନ୍ତ ବହୁଳ ଭାବେ ପ୍ରକାଶିତ ହେଇ କୃତ୍ରିମ ନ ଲାଗୁ । ସେଥିପାଇଁ ସୁଦର୍ଶନାର ବାପାଙ୍କ ଚିତା ଜଳିଲାବେଳେ ମୁଁ ମୋ ଚକ୍ଷୁରୁ ଉଦ୍‌ଗତ ଅଶ୍ରୁକୁ ଜବରଦସ୍ତି ରୋକି ନେଇଥିଲି ।

ଧଳାଶାଢ଼ୀ ପିନ୍ଧି ଅଶ୍ୱତ୍ଥଗଛ ପାଖ ଚଉରାମୂଳରେ ବସି ସୁଦର୍ଶନା ମୁହଁରେ କାନି ଜାକି ନିରାଶ ଆଖିରେ ଚାହିଁଥିଲା । ତା' ଆଖିରୁ ଲୁହଧାର ଗଡ଼ି ଶୁଖି ଯାଇଥିଲା ଓ ଡୋଳା ଦୁଇଟିର କାଳିମା ଯେମିତି ଲୁହରେ ଧୋଇ ଯାଇଥିଲା । ବାଳ ଅସ୍ତବ୍ୟସ୍ତ ଭାବେ ବୁଣି ଯାଇଥିଲା । ଆଉ ସାମ୍ନାରେ ପ୍ରଲମ୍ବିତ ଶ୍ମଶାନ ଆଡ଼କୁ ଏକ ଲୟରେ ସେ ଚାହିଁ ରହିଥିଲା ।

ଅଶ୍ୱତ୍ଥ ଗଛରେ ନୂଆପତ୍ର କଅଁଳି ଆସିଥିଲା । ଆଉ ସେଇ ରେଶମୀ ପତ୍ରସବୁର ଛାଇ ତା' ଉପରେ ପଡୁଥିଲା ଓ ସେଇ ଅଶ୍ୱତ୍ଥଗଛରୁ ଏକ ପ୍ରକାରର ସବୁଜିମା ବୁଣି ହେଇ ଯାଉଥିଲା ଚାରିଆଡ଼େ । ଆଉ ତା' ତଳେ ସୁଦର୍ଶନା ଥିଲା ଏକଦମ୍ ଏକଲା । ଆମେ ଦୁହେଁ ସେଠାରେ ଥିଲୁ ଏବଂ ଦୁହେଁ ଦୁଇଜଣଙ୍କ ପାଇଁ ହିଁ ତାକୁ ସାନ୍ତ୍ୱନା ଦେବାକୁ ସେଠାକୁ ଯାଇପାରୁ ନଥିଲୁ ।

ପ୍ରଜ୍ୱଳିତ ଚିତାଗ୍ନିର କିଛିଦୂରରେ ମହେନ୍ଦ୍ର ବସିଥିଲେ ଆଉ ଗୋଡ଼ି ଗଦା ହେଇଥିବା ସ୍ଥାନରେ ମୁଁ । ମହେନ୍ଦ୍ରଙ୍କର ଶରୀରରେ ଥିଲା ଜଳୁଥିବା ଚିତାଗ୍ନିର ଶିଖାର କ୍ରୋଧିତ ଛାୟା ।

ଲୋକମାନଙ୍କୁ ହିଁ ଏ ପରିବେଶ ଆଶ୍ଚର୍ଯ୍ୟ ଲାଗୁଥିଲା- ମୃତ୍ୟୁର ଏ ଦୁଃଖଦ ମୁହୂର୍ତ୍ତରେ ସୁଦର୍ଶନାର ଅତି ନିକଟରେ ହଁ ମହେନ୍ଦ୍ର ରହିବା କଥା... ଯାହାହେଲେବି ସେ ତାଙ୍କର ସ୍ତ୍ରୀ । ପାଞ୍ଚବର୍ଷ ହେଲା ସେ ଅଲଗା, ହେଲେ କ'ଣ ହେଲା ! ଏଭଳି ସମୟରେ ଏସବୁ ହେବା ଠିକ୍ ନୁହଁ ।

ଆଉ ମୁଁ ଚାହିଁଲେ ବି ସୁଦର୍ଶନାର କାନ୍ଧରେ ହାତ ପକେଇ କଥା ପଦେ ବି କହିବା ସମ୍ଭବ ନଥିଲା- 'ସୁଦର୍ଶନା ! ବାପା ନଥିଲେ କ'ଣ ହେଲା, ମୁଁ ତ ଅଛି, ବ୍ୟସ୍ତ ହୁଅନା...'

କିନ୍ତୁ ସେମିତି କିଛି ହେଲାନି । ହୁତୁ ହୁତୁ ହେଇ ଚିତା ଜଳି ଚାଲିଥିଲା । ପାଞ୍ଚଜଣ ବ୍ରାହ୍ମଣ କପାଳ-କ୍ରିୟା ସମାପନ କରିବା ପରେ ଆମେ ଅଙ୍ଗାର ତୋଳିନେଇ ଚୁପ୍‌ଚାପ୍ ଘରକୁ ଆସିଲୁ । ରାସ୍ତାସାରା କେହି କାହାରି ସହ କଥା ହେଇନଥିଲୁ । ଉଡୁଥିବା ଧୂଳି ଭିତରେ ବଗମାନଙ୍କୁ ଦେଖି ଦେଖି ଆମେ ସମସ୍ତେ ଫେରି ଆସିଥିଲୁ ।

ଦ୍ୱିତୀୟ ଦିନ ଶ୍ମଶାନ ଚିତାରେ ଫୁଲ ବିଛେଇବାକୁ ଯିବାର ଥିଲା, ଲୋକମାନେ କହିଲେ ଜ୍ୱାଇଁ ପୁଅ ଭଳି । ସେ ଯାଆନ୍ତୁ । କିନ୍ତୁ 'ହଁ' କମ୍ବା 'ନା' କିଛି ନକହି ନିଜେ ଚାକରକୁ ନେଇ ସୁଦର୍ଶନା ଫୁଲ ପକେଇବାକୁ ଚାଲି ଯାଇଥିଲା ।

ତୃତୀୟ ଦିନ ସେଠାରେ ରହିବା ମୋତେ ଉଚିତ୍ ଲାଗିନଥିଲା... ଆଉ ଠିକ୍ ସେଇଭଳି ଅନୁଭୂତି ମହେନ୍ଦ୍ରର ବି ହୋଇଥିଲା । ସୁଦର୍ଶନା ପାଖରେ ଚେୟାର ପକେଇ ହତାଶ ହେଇ ବସିଥିଲା ଓ ମୁଁ ଏହା କହିବାକୁ ସେଠାକୁ ଯାଥିଲି । 'ଠିକ୍ ଅଛି ସୁଦର୍ଶନା, ଆଜି ରାତି ଗାଡ଼ିରେ ମୁଁ ଚାଲିଯାଏଁ...' ତା'ପରେ ଉପରୁ ମହେନ୍ଦ୍ର ଆସିଥିଲେ ଏବଂ ତାଙ୍କୁ ଆସିବାର ଦେଖି ମୁଁ ଚୁପ୍‌ଚାପ୍ ବାଟ କାଟିଥିଲି ।

ମହେନ୍ଦ୍ର ଆସିବାରୁ ସୁଦର୍ଶନା ଉଠିପଡ଼ି ଠିଆହେଲା, ସେତେବେଳେ ସେ କହିଥିଲେ, ''ଭାବୁଛି କାଲି ସକାଳୁ ଚାଲିଯିବି ।''

'ଏମିତି କ'ଣ କାମ ଅଛି, ଦିନକ ପରେ ଚାଲିଯିବ ।' ସୁଦର୍ଶନା କହିଥିଲା । ହଠାତ୍ ମୋତେ ଯେମିତି ଏକ ଧକ୍କା ଲାଗିଥିଲା । ସୁଦର୍ଶନା ମହେନ୍ଦ୍ରକୁ ରୋକିବାକୁ ଚାହିଁଥିଲା... ହେଇପାରେ, ଦୁହେଁ କୌଣସି ବୁଝାମଣାରେ ଉପନୀତ ହେପାରନ୍ତି । ପ୍ରାୟ ଏଇଆ ହେଇପାରେ, ଏକଥା ହେବାର ହିଁ ଥିଲା । ସେ ଘରକୁ ଭଡ଼ାରେ ଲଗେଇ ମହେନ୍ଦ୍ର ସହ

ଚାଲିଯିବ... ଆଉ ସେମାନେ ପୁଣି ସାଥିରେ ରହିବେ । କ୍ଷଣକ ପାଇଁ ଲାଗିଲା ଯେ ସବୁକିଛି ଠିକ୍ ହେଉଚି । ହଁ ଆଉ ତା' ସାମ୍ନାରେ ଅନ୍ୟ ରାସ୍ତା କିଛି ଅଛି କି ? ବାପା ଏକା ଥିଲେ... ଆଉ ତାଙ୍କରି ସାହାଯ୍ୟରେ ସେ ଏତେ ବଡ଼ ପଦକ୍ଷେପ ନେଇଥିଲା... ଏବେ ତ ସେ ନିତାନ୍ତ ଏକ୍‌ଲା... ଆଉ କ'ଣ ବି କରିପାରିବ ?

ଆଉ ସେତିକିବେଳେ ମୋର ରହିବାର କୌଣସି ଔଚିତ୍ୟ ନପାଇ ମୁଁ ନିଜକୁ ସମ୍ଭାଳି ନେଇ କହିଥିଲି 'ସୁଦର୍ଶନା, ରାତି ଗାଡ଼ିରେ ଆଜି ଯିବାକୁ ଚାହୁଁଚି । 'କାହିଁକି, ଆଉ ଦିନେ ଅଧେ ରହିଯାଅ ।'

ସେ ଏକଥା କହିବା ପରେ ମୁଁ ଆହୁରି ଅଧିକ ସଂକଟରେ ପଡ଼ିଯାଇଥିଲି । ଭାବୁଥିଲି ଦୁଃଖର ନଈରେ ଏକ ଭଉଁରୀ ଭିତରେ ପଡ଼ିଯାଚି ସୁଦର୍ଶନା ? କ'ଣ ସେ ଏବେ ସଂପୂର୍ଣ୍ଣ ଭାଙ୍ଗିପଡ଼ୁଚି ଭିତରେ ଭିତରେ ଏବଂ କୌଣସି ଜଣକୁ ହଁ ଧରିନେବାକୁ ଚାହୁଁଛି... ?

ଆମେ ଦୁହେଁ ଅଟକିଗଲୁ । ଜଣେ ଅନ୍ୟଜଣଙ୍କ ଠାରୁ ଅଲଗା... ଅଲଗା ଏବଂ ବିଛିନ୍ନ... ।

... ଏବଂ ସେଇଘରେ ଆମେ ତିନିଜଣ ପୁରୁଣା ସ୍ମୃତିରେ ହିଁ ବୁଡ଼ି ରହିଥିଲୁ । ସେଥିପାଇଁ ସେଠାରେ ରହିବା ଥିଲା ଆହୁରି କଷ୍ଟକର । ଏ ସେଇ ଘର ଯେଉଁଠି ସୁଦର୍ଶନା ପାଖରେ ଅତୀତରେ ମୁଁ ଘଣ୍ଟା ଘଣ୍ଟା ବିତେଇ ଦେଉଥିଲି... ଏହାର ପ୍ରତ୍ୟେକ କାନ୍ଥ ହିଁ ସାକ୍ଷୀ ଆମ ପ୍ରଥମ ପ୍ରେମର... ସେଇ କାନ୍ଥ ଏବେବି ସେଇଠି ଥିଲା, ଯାହାକୁ ଡେରିହେଇ ଦିନେ ସୁଦର୍ଶନା ଠିଆ ହେଇଥିଲା ଓ ମୁଁ ତାକୁ ଦୁଇ ବାହୁରେ ଛନ୍ଦି ନେଇଥିଲି... ପ୍ରଥମ ଥର । ମୁଁ କାନ୍ଥରେ ହାତ ରଖିଥିଲି, ସେତେବେଳେ ସୁଦର୍ଶନା ସରମେଇ ଯାଇ କହିଥିଲା- ଏ ବାହୁ ବନ୍ଧନୀ ଏମିତି ରହିଥିବନା... ଏହା ମୋ ପାଇଁ ସବୁଦିନେ ଏଇମିତି ଥିବ ତ ?... କାହିଁକି ? ଆଉ ମୁଁ ଠିଆହେଇ ହସୁଥିଲି କେବଳ ।

ତା'ପରେ ଏ ଘରେ ଧୀରେ ଧୀରେ ସବୁକିଛି ବଦଳ ଯାଇଥିଲା । ଦିନେ ମହେନ୍ଦ୍ର ଦେଖା ଦେଇଥିଲେ ଏବଂ ସବୁକିଛି ପରିବର୍ତ୍ତିତ ହେଇଯାଇଥିଲା । ଘରର ଲୋକମାନେ ବି ବ୍ୟବହାର ବଦଳେଇ ଦେଇଥିଲେ ଏବଂ ସେଠାକୁ ଯିବା ଆସିବା କରିବାକୁ ମୁଁ ଅପମାନଜନକ ବୋଲି ଭାବିଥିଲି... ଏବେ ସେ ସବୁ କଥା ଭାବିଲେ ହସ ଲାଗେ । କିନ୍ତୁ ଏସବୁ ସତ୍ତ୍ୱେ ଆଜି ସେ ସମସ୍ତ ଯନ୍ତ୍ରଣା ଭୁଲିପାରିନି ।

ରାସ୍ତା ବଦଳି ଯାଇଥିଲା, ଆଉ ଲାଗୁଥିଲା ସୁଦର୍ଶନା ଓ ମୁଁ ନିଜକୁ ଭୁଲିଯାଇଛୁ । ଭାବି ନେଇଥିଲି ଯେ ସେ ସମୟର ସେଇ ସମ୍ବନ୍ଧ ଏକ ପିଲାଳିଆମି ହିଁ ଥିଲା.... ଆମେ ଦୁଇଜଣ ନିଜ ନିଜକୁ ବୁଝେଇ ନେଇଥିଲୁ ।

ସୁଦର୍ଶନା ନିଜ ପତିଙ୍କ ସହ ବେଶ୍ ଖୁସି ଥିଲା । ଆଉ ଯେବେ ପ୍ରଥମ ଥର ପାଇଁ ସୁଦର୍ଶନା ଓ ମହେନ୍ଦ୍ର ମୋର ଭେଟ ହେଇଥିଲେ, ସୁଦର୍ଶନାର ଆଖିରେ ପ୍ରଥମ ପରିଚୟର

ଏକ ଧୂଆଁଳିଆ ଚିତ୍ର ଦେଖା ଦେଇଥିଲା । କିନ୍ତୁ ମହେନ୍ଦ୍ରର ଦେହରେ ଥିଲା ବିଜୟୀ ହେବାର ହାବଭାବ, ଥିଲା ଏକ ଆନନ୍ଦିତ ହେବାର ଭାବନା... ଆଉ ମୁଁ ନିଜକୁ ଆହୁରି ଭାଙ୍ଗି ପଡ଼ିବା ଭଳି ଅନୁଭବ କରିଥିଲି ।

'ବେଳେ ବେଳେ ଘରେ ଆମେ ଆପଣଙ୍କ ବିଷୟରେ କଥାହେଉଁ ।' ମହେନ୍ଦ୍ର ହାତ ମିଳେଇ କହିଥିଲା, ଏମିତି ତ ଆମ ଦୁଇଜଣଙ୍କୁ କଥାବାର୍ତ୍ତାରେ ଫୁର୍‌ସତ୍ ମିଳୁନି ! ଆମେ ଦୁହେଁ ଖୁବ୍ ଗପୁଡ଼ି... କହିସାରି ସେ ହସିଥିଲା । ମୁଁ ଧୈର୍ଯ୍ୟର ସହ ଏ କଥାକୁ ଆଖିବୁଜି ହଜମ୍ କରି ନେଇଥିଲି । କିନ୍ତୁ ଆଖିରେ ଆଖିରେ ସୁଦର୍ଶନାକୁ ପଚାରିବାକୁ ଚାହିଁଥିଲି, 'ମୋତେ ଏଭଳି ଅପମାନିତ କାହିଁକି କରାଯାଉଚି ସୁଦର୍ଶନା ? ନିଜ ସ୍ୱାମୀଙ୍କର କଥାର ବ୍ୟଙ୍ଗାର୍ଥ ବୁଝିପାରୁଚ ତ ?' ସୁଦର୍ଶନା ମହେନ୍ଦ୍ରର କଥାର ଦଂଶନକୁ ବୁଝିପାରିଥିଲା ଆଉ ଅବୋଧପଣିଆରେ ଏଇ କ୍ଷତକୁ ଆହୁରି ଗମ୍ଭୀର କରି ଦେଇଥିଲା 'ଆପଣଙ୍କ ବିଷୟରେ ଆମେ ଭଲ କଥା ସବୁ ହେଉଥାଉ' ବୋଲି କହି ।

'ମୁଁ ବୁଝିପାରେନା ଯେ ଭଲକଥା କ'ଣ ?' ଖୁବ୍ କଷ୍ଟର ସହ ହସି ହସି ମୁଁ ପଚାରିଥିଲି, କିନ୍ତୁ କିଛି ଉତ୍ତର ମିଳିନଥିଲା । ସୁଦର୍ଶନା ଏବଂ ମହେନ୍ଦ୍ର ଅନ୍ୟ କେଉଁଠିକୁ ଯିବାପାଇଁ ଶୀଘ୍ର ଚାଲି ଯାଇଥିଲେ ।

ମୋତେ କଷ୍ଟ ହେଇଥିଲା, ପୁଣି କିଛିଟା ଭଲ ଲାଗିଥିଲା ଯେ, ଯାହାହେଉ ଦୁହେଁ ଭାରି ଖୁସି ଅଛନ୍ତି...

ତା'ପରେ ବହୁତ କିଛି କଥା ଶୁଣାଯାଇଥିଲା... ସେ ଦୁଇଜଣଙ୍କ ସଫଳତା ବିଷୟରେ... ଯେ ଖୁବ୍ ସୁନ୍ଦର ଘରଟିଏ ବନେଇଛନ୍ତି ସେମାନେ । କାର୍ କିଣିଛନ୍ତି ଆଉ ତିନିଜଣ ଚାକର ବି ଅଛନ୍ତି । ସବୁ ପ୍ରକାରର ସୁବିଧା ଅଛି ସେଇ ଘରେ । ସେମାନଙ୍କର ବୁଲାବୁଲି କରିବାର ଖବର ଘରକୁ ବି ଆସୁଥିଲା । ଖୁବ୍ ବିସ୍ତୃତ ଭାବରେ ବର୍ଣ୍ଣିତ ଚିଠି ସବୁ ଆସୁଥିଲା ମୋ ପାଖକୁ । ଯେଉଁ ସ୍ଥାନ ପରିଭ୍ରମଣରେ ସେମାନେ ଯାଉଥିଲେ... ପିକ୍‌ଚର ପୋଷ୍ଟକାର୍ଡ଼ରେ ମୋ ପାଖକୁ ଚିଠି ସେମାନେ ଦେଉଥିଲେ । ଡାକରେ ପାର୍ସଲ ଦ୍ୱାରା ଉପହାର ବି ଆସିଥିଲା ।

ତା'ପରେ ସୁଦର୍ଶନା ଥରେ ଆସିଥିଲା କାହିଁକି କେଜାଣି । କୌଣସି ପୂର୍ବ ସୂଚନା ବିନା ସେ ଆସିଥିଲା । କିଛି ସମୟ ପାଇଁ ଆମର ସାକ୍ଷାତ ହେଇଥିଲା- ଆଉ ସେ ନିଜର ଦୁଃଖର ଆବେଗକୁ ଚାପି ପାରି ନଥିଲା । ଧୀରେ କହିଥିଲା 'ପୁରୁଷମାନେ ଖୁବ୍ ସନ୍ଦେହୀ ନା ?' 'କାହିଁକି ?'

ଜାଣେନା କାହିଁକି ସେହିକ୍ଷଣି କେଉଁ ବିଶ୍ୱାସରେ ସେ ମୋତେ ତା'ର ବହୁତ କଥା କହିଦେଇଥିଲା । 'ଦେଖ ଚନ୍ଦର୍, ମୁଁ ଘରେ ବି କାହାରିକୁ କହିପାରିବିନି, କିନ୍ତୁ ତୁମକୁ କହିବାକୁ ସଂକୋଚ କରୁନି... କୌଣସି ଦୁଃଖ ନାହିଁ ମୋର... କିନ୍ତୁ ଲାଗୁଛି ଯେମିତି

ଭବିଷ୍ୟତରେ ଆଉ ବେଶୀଦିନ ଏସବୁ ଚାଲିବନି ।

'କଥା କ'ଣ କୁହ ସୁଦର୍ଶନା ? ପ୍ରାୟ କହିଦେଲେ ତୁମ ମନର ବୋଝ ହାଲ୍‌କା ହେଇଯିବ... ମୁଁ କହିଥିଲି ।

'କିଛି ନୁହଁ, ଛୋଟ କଥାଟିଏ... । ଦିନେ ହୋଟେଲର ଏକ ରୁମ୍‌ରେ ଆମେ ଦୁହେଁ ବସି ଅତୀତର ରୋମନ୍ଥନ କରୁଥିଲୁ । ମୁଁ ତାଙ୍କ ଛାତିରେ ମୁଣ୍ଡ ରଖିଥିଲି ଆଉ ତାଙ୍କ ହାତ ଥିଲା ମୋ କାନ୍ଧ ଉପରେ... ସେତେବେଳେ ସେ ତାଙ୍କର ଏକ ଭୁଲିଯାଇଥିବା ପ୍ରେମକଥା ଶୁଣେଇଥିଲେ । ମୁଁ ବହୁତ ମଜାର ସହ ଏହାକୁ ଶୁଣିଥିଲି ଆଉ ଗର୍ବିତ ଅନୁଭବ କରିଥିଲି ଯେ, ଯାହାହେଉ ମୁଁ ଏଥର ୟା'ଙ୍କୁ ଜିତିଯାଇଚି । ତା'ପରେ ଖୁବ୍ ସ୍ନେହର ସହ ମୋତେ ପଚାରିଥିଲେ 'ଦର୍ଶୀ, ତୁମେ ବି କାହାରିକୁ ମନେ ମନେ କେବେ ଚାହିଁଥିବ ?'

'ସେହି ସମୟରେ ମୁଁ ମିଛ କହିପାରିଥାଆନ୍ତି, କିନ୍ତୁ ଆମେ ଥିଲୁ ସତ୍ୟର ଖୁବ୍ ନିକଟରେ ଆଉ ଖୁବ୍ ଖୋଲାଖୋଲି କଥାବାର୍ତ୍ତା ହେଉଥିଲୁ... ସବୁକିଛି ସ୍ୱୀକାର କରିନେବା ମୁଡ୍‌ରେ ଥିଲୁ । ଆଉ ସେହିକ୍ଷଣି ମୁଁ ୟା'ଙ୍କୁ ତୁମ ବିଷୟରେ କିଛି ସୂଚନା ଦେଇଥିଲି... କି ତୁମେ ମୋତେ ଖୁବ୍ ଚାହୁଁଥିଲ... ସେଇଥିପାଇଁ ଏବେଯାଏ ବିବାହ କରିନ... ସତକଥା... ମୋତେ ସେ ସମୟରେ ଏକ ଗଭୀର ତୃପ୍ତି ମିଳିଥିଲା... ଏଇଆ ଭାବି ଯେ ତୁମେ ଏବେବି ମୋତେ ମନେ ପକାଉଥିବ...

'ପୁଣି ସେ କଥାକୁ ଖୋଲାଖୋଲି କରି ଆହୁରି କିଛି ପଚାରିଥିଲେ- ଆଉ ମୁଁ ଏକ ନିଶାରେ ସବୁକିଛି କହି ଚାଲିଥିଲି । ଆଉ କିଛି ସମୟ ପରେ ମୁଁ ଅନୁଭବ କରିଥିଲି ଯେ ଆମ ଦୁହିଁଙ୍କ ମଝିରେ କିଏ ଜଣେ ତୃତୀୟ ଆସିଯାଇଚି...'

ସେଇଦିନଠାରୁ ସେହି ତୃତୀୟ ଜଣକ ଆମ ଦୁଇଜଣଙ୍କ ମଝିରେ ସବୁବେଳେ ଅଛି...' ପ୍ରକୃତରେ ସେ ଜଣକ ତୁମେ ନୁହଁ । ମୋ ପାଇଁ ସେଇ ତୃତୀୟ ଜଣକର ଚେହେରା ତୁମ ଚେହେରାରେ ପରବର୍ତ୍ତିତ ହେଇଯାଉଛି ଆଉ ୟାଙ୍କ ପାଇଁ ସେଇ ତୃତୀୟ ବ୍ୟକ୍ତିର ନାମ 'ତୁମ' ନାମ ସହ ଯୋଡ଼ି ହେଇଯାଉଚି । ଆଉ ସେଇ ଛାଇ ସବୁବେଳେ ମୋ ସହ ରହିଆସିଛି... କହିସାରି ସୁଦର୍ଶନାର ଆଖି ଓଦା ହେଇ ଆସିଥିଲା ।

'ଏ ଛାୟା ତୁମକୁ ଖୁବ୍ କଷ୍ଟ ଦେଉଚି ନା !'

'ଏହା ଦୁଃଖର କଥା ଯେ ଆମେ ଦୁହେଁ ପ୍ରାୟ ଖୁବ୍ ଭଲ... ଆମ ଦୁଇଜଣଙ୍କର ଦୁହିଁଙ୍କ ବିଷୟରେ କିଛି ଅଭିଯୋଗ ବି ନାହିଁ, କିନ୍ତୁ ଏବେ ଆମେ ଖୋଲାଖୋଲି କଥା ବି ହେଇପାରୁନୁ... କେତେବେଳେ ମୁଁ ନିଜ ଭାବନାରେ ବୁଡିରହି ୟା'ଙ୍କ ସହ କଥାହେଲେ ବି ୟା'ଙ୍କ ଦୃଷ୍ଟିରେ ଏକ 'ସନ୍ଦେହ' ସୃଷ୍ଟି ହେଉଚି... ମୋର ସବୁ କଥା, ସବୁ ଭାବନାର ଅର୍ଥ ହିଁ ବଦଳିଯାଇଚି ୟା'ଙ୍କ ପାଇଁ... ମୁଁ ବୁଝିପାରୁନି ଯେ ଏସବୁର କେମିତି ନିର୍ବାହ କରାଯିବ...

ଏଥର ଏତିକି ହିଁ କଥା ହେଇଥିଲି ସୁଦର୍ଶନା ସହ । ମୋ ମନ ଆଶଙ୍କାଗ୍ରସ୍ତ

ହେଇଯାଇଥିଲା । ଲାଗୁଥିଲା ଯେମିତି ସବୁକିଛି ବିଛିନ୍ନ ହେଇଯିବାର ପରିସ୍ଥିତି ଖୁବ୍ ଶୀଘ୍ର ଆସିଯାଇଚି । ମୋ ମନ ଉଦାସ ହେଇ ଉଠିଥିଲା ଆଉ ନିଜକୁ ଖୁବ୍ ସମ୍ଭାଳିନେଇ ମୁଁ କହିଥିଲି 'ମୁଁ ଭାବୁଥିଲି ଯେ ତୁମେ ଖୁବ୍ ଆନନ୍ଦରେ ଥିବ... କିନ୍ତୁ ଆଘାତ ଲାଗିଲା ଏସବୁ ଜାଣିବା ପରେ... କିନ୍ତୁ ମୁଁ ତୁମକୁ ବି କ'ଣ ଉପଦେଶ ଦେଇପାରିବି ସୁଦର୍ଶନା ? ଏଭଳି ପରିସ୍ଥିତିରେ ବି ନୁହଁ । ନିଜ ନିଜ ଜୀବନର ଭାରସାମ୍ୟ ପ୍ରତି ମଣିଷ ଭିନ୍ନ ଭିନ୍ନ ଭାବେ ହିଁ ଖୋଜିଥାଏ...

'କ'ଣ କହିବି ଚନ୍ଦର୍... ଲାଗୁଛି ଯେମିତି, ଜୁଆରରେ ଏବେ ଭଟ୍ଟା ପଡ଼ିଯାଇଚି । ଭିଜିଯାଇଥିବା ତଟଦେଶରେ କେବଳ ବର୍ଜିତ ବସ୍ତୁ ଓ ଫେଣ ହିଁ ରହିଯାଇଛି... ଧୀରେ ଧୀରେ ଏଇ ତଟଦେଶ ଶୁଖି ଶୁଖି ଶୁଷ୍କ ହେଇ ରହିଯିବ ।

ମୁଁ ତ କିଛି କହିପାରିବିନି ସୁଦର୍ଶନା, କିନ୍ତୁ ଭିତରେ ଭିତରେ ଯେମିତି ଶ୍ୱାସରୁଦ୍ଧ ହେଯାଉଚି ମୁଁ, ତୁମ ପାଇଁ ତ ମୋ ଭିତରେ ସେତିକି ଅବଶେଷ ରହିଯାଇଚି ।'

'କେମିତି ଏସବୁ କହିପାରୁଚ ! ସେ ତ ଥିଲା ନିଷ୍ଠୁର ନିୟତି, ଯାହା ଆମକୁ ଭସେଇ ନେଇଗଲା ତା' ଉଜାଣି ସୁଅରେ... ଯାହାକୁ ଗୁରୁତ୍ୱ ଦେଇ ନିଜ ସହ ଛଳନା କରିବାକୁ ହିଁ ଚାହିଁଥିଲି । ଏବେ ସେଇ ନିୟତି ମୋ ସହ ଛଳନା କରୁଚି... ସୁଦର୍ଶନାର ଆଖିରେ ଲୁହ ଜକେଇ ଆସିଥିଲା, ଆଉ ସେ ଦୁଇ ପାପୁଲି ଦେଖେଇ ମୋତେ ପଚାରଥିଲା, ଏବେ କୁହ ଏଥିରେ ଆଉ କ'ଣ ସବୁ ଲେଖା ହେଇଚି ?'

'ଏଥିରେ କିଛି ଆଉ ଲେଖା ହେଇନି ସୁଦର୍ଶନା ?'

'ମୁଁ ଫେରିଯାଉଚି, ଆଉ କ'ଣ କରିବି ?'

'ତୁମେ କେଉଁଠି ଚାକିରି କଲେ ମନ ବଦଳିଯିବ । ବ୍ୟସ୍ତ ରହିଲେ କିଛିଟା ଭୁଲିଯାଇହେବ । ମୋ କଥା ଶୁଣି ସେ ହସିଲା । ଏସବୁ ମୁଁ ବି ଜାଣିଚି, କିନ୍ତୁ ଏହା ସମାଧାନ ନୁହଁ... ଶୁଣ ଆଉ କିଛି କୁହ ଚନ୍ଦର୍... ଖୁବ୍ ବିବଶତାର ସହ ସୁଦର୍ଶନା କହିଥିଲା । କିନ୍ତୁ ମୋ ପାଖରେ ଏହାର କିଛି ଉତ୍ତର ନଥିଲା ।

ଯିବାବେଳେ ମୁଁ କେବଳ ଏତିକି ହିଁ କହିଥିଲି- 'ସମୟ ପାଇଲେ ଖବର ଦେବ, ଦୁଃଖ ସୁଖ ଲେଖି ଜଣାଇବ...'

ଆଉ ସେ ଫେରି ଯାଇଥିଲା । ପୁଣି ଆସିଥିଲା ଆନନ୍ଦର ଏକ ପର୍ଯ୍ୟାୟ । ପୁଣି ତା' ପାଖରୁ ସେଇଭଳି ଚିଠି ଆସିଥିଲା, କିନ୍ତୁ ସେତେ ଲମ୍ବା ନୁହଁ । ଲାଗୁଥିଲା, ଯେମିତି ସେ ଚିଠି ଲେଖି ଲେଖି ହିଁ ନିଜର ହଜିଯାଇଥିବା ଆନନ୍ଦକୁ ଦ୍ୱିତୀୟ ଥର ପାଇଁ ପାଇନେବାକୁ ଏକ ଅସଫଳ ପ୍ରୟାସ କରି ଚାଲିଚି ।

ଆଉ ଏକ ଜୁଆର ଆସି ପୁଣି ଲେଉଟିଗଲା... ପାଞ୍ଚବର୍ଷ ପରେ ସେ ତାଙ୍କ ବାପାଙ୍କ ନିକଟକୁ ଆସିଥିଲା, ଆଉ କେବେ ଏଠାରୁ ସେ ଫେରିନଥିଲା । ପ୍ରଥମେ ତ ତା' ବାପା

ଲୋକମାନଙ୍କୁ କହିଥିଲେ ଯେ ମହେନ୍ଦ୍ର ଗୋଟେ ଟ୍ରେନିଂରେ ବର୍ଷକ ପାଇଁ ବିଦେଶ ଯାଉଚି । ସେଥିପାଇଁ ସୁଦର୍ଶନା ମୋ ପାଖରେ ରହିବ... କିନ୍ତୁ ବର୍ଷକ ପରେ ବର୍ଷେ... ଏମିତି ଚାରିବର୍ଷ ବିତିଯିବା ପରେ ଲୋକମାନେ କାନ କୁହାକୁହ ହେଇ ପରିସ୍ଥିତିକୁ ଗ୍ରହଣ କରି ନେଇଥିଲେ ।

କିନ୍ତୁ ମୁଁ ଏଇ ପରିସ୍ଥିତିକୁ ଗ୍ରହଣ କରିପାରୁ ନଥିଲି । ଥରେ ମୁଁ କେବଳ ସେଇଥିପାଇଁ ହିଁ ଆସିଥିଲି ଏବଂ ସୁଦର୍ଶନାକୁ ବୁଲେଇ ବଙ୍କେଇ ଏଠାକୁ ଚାଲି ଆସିବାର କାରଣ ପଚାରିଥିଲି ।

ସେତେବେଳକୁ ସେ ନିଜକୁ କିଛିଟା ପ୍ରସ୍ତୁତ କରିନେଇଥିଲା । ଧୀରେ ହସିଦେଇ କହିଥିଲା, 'କୌଣସି ବିଶେଷ କାରଣ ନୁହଁ... ଏଇୟା ଭାବିନିଅ ଯେ ଆମେ ଦୁହେଁ ଖୁବ୍ ଭଲ, ତେଣୁ କେହି କାହାରିକୁ କଷ୍ଟ ଦେବାକୁ ଚାହୁଁନା । ଆଉ ଆମର ଯନ୍ତ୍ରଣା ବି ଏମିତି ଯେ ଯାହାକୁ ଆମେ ସାଥିହେଇ ଭୋଗକରି ପାରିନଥାନ୍ତୁ ।' କହୁ କହୁ ସେ ନିଜ ଜୁଡ଼ାରୁ ପିନ୍‌ଟିଏ କାଢ଼ି ନେଇଥିଲା ଆଉ ମାଟିରେ ଗାର କାଟିବାରେ ଲାଗିଥିଲା ।

ଚାରିଆଡ଼େ ଏକ ଆଶ୍ଚର୍ଯ୍ୟଜନକ ବିବଶତା ବ୍ୟାପି ଯାଇଥିଲା । ସନ୍ଧ୍ୟାର ଅନ୍ଧକାର ଧୀରେ ଧୀରେ ଗାଢ଼ ହେଇଚାଲିଥିଲା । ଗଛ ସବୁ ନିସ୍ତବ୍ଧ ହେଇ ଛିଡ଼ା ହେଇଥିଲେ, ଘରଦ୍ୱାର ଚାରିଆଡ଼େ ଅନ୍ଧାର ଭରି ଯାଉଥିଲା ଯେମିତି । ସୁଦର୍ଶନାର ବାପା ବାରଣ୍ଡାର ବିଜୁଳି ଜଳେଇ ଦେଇ ଭିତରକୁ ଚାଲି ଯାଇଥିଲେ । ଜାଣେନା, ସୁଦର୍ଶନା କ'ଣ ଅନୁଭବ କରିଥିଲା, ଧୀରେ କହିଥିଲା- 'ଏବେ ତ ଅନ୍ଧାର ଆହୁରି ବେଶୀ ହେଲାଣି । ଆସ, ବାରଣ୍ଡାକୁ ଯିବା ।'

ଜାଣେନା, ସୁଦର୍ଶନା ଏଇ ପାଞ୍ଚବର୍ଷର ସମୟ କେମିତି ବିତେଇଥିବ । କାରଣ ଘରେ ତା' ବାପାଙ୍କୁ ଛାଡ଼ି ଆଉ କେହି ନଥିଲେ । ବାପ, ଝିଅ ଦୁଇଜଣ କେବଳ ।

ଆଉ ଯେବେ ତା' ବାପାଙ୍କର ମୃତ୍ୟୁ ଖବର ମିଳିଲା... ମୁଁ ବହୁତ ଭାଙ୍ଗିପଡ଼ିଲି, ମୋର ଖୁବ୍ ଚିନ୍ତା ଏଇଥିପାଇଁ ଥିଲା ଯେ ଏବେ ସୁଦର୍ଶନାର ହେବ କ'ଣ ?' ସେ କୁଆଡ଼େ ଯିବ ? ପ୍ରାୟ ମହେନ୍ଦ୍ରଙ୍କ ନିକଟକୁ ସେ ଫେରିଯିବ, ଆଉ ତା'ର ଉପାୟ ବା କ'ଣ ଅଛି ? ଯିବା ସମୟରେ ଆଶା ନଥିଲା ଯେ ମହେନ୍ଦ୍ର ଆସିବେ । କିନ୍ତୁ ପହଞ୍ଚି ଦେଖିଲି, ସେଠାରେ ସେ ଥିଲେ । ଶୁଦ୍ଧିକ୍ରିୟା-କର୍ମକାଣ୍ଡ ବେଳେ ଦୁହିଁଙ୍କ ଭିତରେ ପୁଣି ବିକଶିତ ହେଉଥିବା ସମ୍ପର୍କର ଆଭାସ ମିଳିଥିଲା । ପ୍ରାୟ ସୁଦର୍ଶନା ସବୁକିଛି ବୁଝି ସୁଝି ତାଙ୍କୁ କିଛି କରିବାରୁ ନିବୃତ୍ତ ରଖିଥିଲା । ପ୍ରାୟ ସେ ଚାହୁଁଥିଲା ନିଜର ଏକାକୀତ୍ୱକୁ ଭଗ୍ନକରି ମହେନ୍ଦ୍ର ତା' ତରଫରୁ ହାତ ବଢ଼େଇବ, ସେଇଥିପାଇଁ ସେଦିନ ଦି'ପହରେ ପାଖ କୋଠରୀରେ ଯେତେବେଳେ ମହେନ୍ଦ୍ର ଥିଲେ ଏବଂ ଆମେ ବସି କଥା ହେଉଥିଲୁ, ମୁଁ ତାକୁ କହିଥିଲି, ''ତୁମେ କେବେ ଯାଉଚ ?''

'କେଉଁଠିକୁ ?'

'ମୁଁ ହସି ଦେଇଥିଲି । ସେ ବି ହସିଥିଲା ଏବଂ ପୁଣି ଉଦାସ ହେଇଯାଇ କହିଥିଲା,

'ଏଠି ଆଉ ସେଠି ଭିତରେ ପ୍ରଭେଦ କ'ଣ ? ଏଠାରେ ଏକ ଦୁଃଖ ଯେ ମୁଁ ବିତିଯାଉଛି ଆଉ ସେଠି ମୋତେ ବିତିଯିବାକୁ ହୁଏ ।

'ସେ ସବୁ ତ ଠିକ୍ । ତଥାପି ନିଜ ପାଇଁ କିଛି ରାସ୍ତା ବାଛିନିଅ, ପ୍ରାୟ ମହେନ୍ଦ୍ର ସେଥିପାଇଁ ଆସିଛନ୍ତି ।'

'ତୁମେ କାହିଁକି ଆସିଛ ?' ସେ ହଠାତ୍ ପଚାରିଲା ।

କିଛିକ୍ଷଣ ପାଇଁ ନୀରବତାର ରାଜୁତି । ସେ ପୁଣି ଝର୍କା ବାହାରେ ଉଡ଼ି ଚାଲିଥିବା ଧୂଳିର ବଗମାଳାକୁ ସେ ଦେଖି ଚାଲିଥିଲା । ତା' ମଥାରେ ଝାଳ ଜକେଇ ଆସିଥିଲା । ଲୋମମୂଳ ସଙ୍କୁଚିତ ହେଇଯାଉଥିଲା ଓ ଆଉ ନିଃଶ୍ୱାସ ଦୀର୍ଘଶ୍ୱାସରେ ପରିବର୍ତ୍ତିତ ହେଇଚାଲିଥିଲା ।

କିଛି ସମୟ ନୀରବ ରହିବା ପରେ ସେ କହିଥିଲା- ''ଦେଖ, ସବୁକିଛି ସମସ୍ତଙ୍କୁ କହି ହୁଏନା, ଏତେ ଉନ୍ମୁକ୍ତ ଭାବରେ ଜୀବନକୁ ନେଇ ବଞ୍ଚି ହୁଏନା, କେତୋଟି ସୁନ୍ଦର ମୋଡ଼ର ଜୀବନ ପାଇଁ ବି ଆବଶ୍ୟକତା ଅଛି...''

ମୁଁ ତାକୁ ଯେତେ ବୁଝେଇବାକୁ ଚେଷ୍ଟା କରଲେ ବି କଥା ଆହୁରି ଅସହଜ ଆଡ଼କୁ ଗତି କରୁଥିଲା । ଧୀରେ ଧୀରେ ବଢ଼ି ଚାଲିଥିଲା ଦୁଃସହ ଲାଗୁଥିବା ଦିନ । ମହେନ୍ଦ୍ର ସନ୍ଧ୍ୟାଯାଏ ନିଜ ଘରେ ହିଁ ଆବଦ୍ଧ ଥିଲେ ।

ପରଦିନ ସକାଳେ ତାଙ୍କର ଯିବାର ଥିଲା । ରାତିରେ ଖାଇ ସାରିବା ପରେ ମୁଁ ନିଜ କୋଠରୀକୁ ଚାଲି ଯାଇଥିଲି । ମହେନ୍ଦ୍ରର ରୁମ୍‌ରୁ ରାତିରେ କିଛି ଶବ୍ଦ ଶୁଣାଯାଉଥିଲା- କିଛି କଥାବାର୍ତ୍ତା, ସୁଁ ସୁଁ ଓ ନୀରବତାର ଶବ୍ଦ । ସେଇ ରାତି ଥିଲା ଏକ ଦ୍ୱିଧାଗ୍ରସ୍ତତାର ରାତ୍ରି ।

ସକାଳକୁ ପରିସ୍ଥିତି ଥିଲା ଖୁବ୍ ଶାନ୍ତ । ମୁଁ ବାଥ୍‌ରୁମ୍‌ରୁ ବାହାରିଲା ବେଳକୁ ସୁଦର୍ଶନା ମହେନ୍ଦ୍ରର ରୁମ୍‌ରୁ ବାହାରି ନିଜ ରୁମ୍‌କୁ ଯାଉଥିଲା । ଖୁବ୍ ଅଳସ ଓ ଅସ୍ତବ୍ୟସ୍ତ ଲାଗୁଥିଲା । ଆଉ ଦଶଟା ବେଳକୁ ମହେନ୍ଦ୍ର ଗାଡ଼ିରେ ଚାଲିଯିବା ପରେ ମୁଁ ନିଜକୁ ଖୁବ୍ ଅସୁବିଧାଜନକ ପରିସ୍ଥିତିରେ ପାଇଥିଲି । ମନ ହେଉଥିଲା ସୁଦର୍ଶନାକୁ କହିଦେବାକୁ- ''ତୁମେ ନିଜର ଦୁଃଖକୁ ଦାର୍ଶନିକତାର ପୋଷାକରେ ଘୋଡ଼ା ରଖିଛ କାହିଁକି ? ଏଥିରୁ କ'ଣ ତୁମକୁ କିଛି ମିଳୁଛି ?'' କାରଣ ମୋତେ ଲାଗୁଥିଲା ଯେମିତି ସୁଦର୍ଶନା ସେଇଭଳି ଅସ୍ତବ୍ୟସ୍ତ ଓ ଦୁଃଖର ମୂର୍ତ୍ତିଟିଏ ହେଇ ମୋ ସାମ୍ନାକୁ ଆସିବ ।

ଗୋଟାଏ ବେଳକୁ ମୋ ରୁମ୍‌ର ଦୁଆର କିଏ ଖଟ୍ ଖଟ୍ କଲା । ବାହାରକୁ ଆସି ଦେଖିଲି ସୁଦର୍ଶନା ସଜେଇ ହେଇ ଛିଡ଼ା ହେଇଚି- ଠିକ୍ ସେଇମିତି, ଯେମିତି ଦଶବର୍ଷ ପୂର୍ବେ ଥିଲା । ଲାଗୁଥିଲା ଯେମିତି ସେ ଲେଉଟି ଆସିଛି । ଆଉ ପୁଣି ଅନ୍ୟ ଏକ ଇତିହାସର ଅଯମାରମ୍ଭ ହେବାକୁ ଯାଉଚି... ସେଇ ବିନ୍ଦୁରୁ ହିଁ... ଯେଉଁଠୁ ଏ ଘଟଣାର ମୋଡ଼ ବଦଳି ଯାଇଥିଲା ।

'ଚାଲ ବାହାରେ କେଉଁଠି ଖାଇବାକୁ ଯିବା, ଜଲ୍‌ଦି ପ୍ରସ୍ତୁତ ହେଇଯାଅ ।'...

ଖାଇଲାବେଳେ ଆମେ ସେ ସବୁ କଥା ମନେ ପକେଇ ଥିଲୁ, ଯାହା ଆମ ସଂପର୍କକୁ କେବେ ଯୋଡ଼ି ଦେଇଥିଲା । ଯଦି ଆମେ ସାଥିରେ ଥାଆନ୍ତେ, ତେବେ କ'ଣ ହେଇଥାନ୍ତା । ଜୀବନର କେଉଁ ମୂଲ୍ୟକୁ ନେଇ ବଞ୍ଚିଥାଆନ୍ତେ ? ... ପୁଣି ଥରେ ସେଇ ପ୍ରେମର ଛାଇ ଆଖିରେ ଆମର ଝଟ୍‌କି ଉଠିଥିଲା ଓ ଲାଗୁଥିଲା ଯେମିତି କିଛି ଭିତରେ ଭିତରେ ସଂଘଟିତ ହେଇଚାଲିଛି ।

ଦ୍ୱିପହରକୁ ଫେରିଆସି ଆମେ ହୁଏତ ଭୁଲି ଯାଇଥିଲୁ ଯେ କିଛିଦିନ ପୂର୍ବରୁ ଏଇଠାରେ ଏକ ମୃତ୍ୟୁ ଘଟିଯାଇଥିଲା ଓ କିଛିଦିନ ହେଲା ଦୁଃଖର ବାତାବରଣ ଏଠାରେ ବିରାଜୁଥିଲା ।

ସନ୍ଧ୍ୟାବେଳକୁ ମୁଁ ଯେତେବେଳେ ଯିବାକୁ ପ୍ରସ୍ତୁତ ହେଲି ଭାବୁଥିଲି ହୁଏତ ସୁଦର୍ଶନା ଆସି ମୋତେ ଅଟକେଇବ, ବ୍ୟସ୍ତ ହେବ କିନ୍ତୁ ଏମିତି କିଛି ହେଲାନି । ଗାଡ଼ି ଟାଇମ୍ ହେବା ଆଗରୁ ସେ ରୁମ୍‌କୁ ଆସିଥିଲା ଆଉ କହିଥିଲା- ''ମୁଁ ଷ୍ଟେସନକୁ ଛାଡ଼ିବା ପାଇଁ ଯିବି ।''

ରାସ୍ତାରେ ମୁଁ ଖୁବ୍ ଆଗପଛ ଚିନ୍ତାକରି ତାକୁ କହିଥିଲି- 'ସୁଦର୍ଶନା, ଏବେ କିଛି ଚିନ୍ତା କର ଡିୟର, ନିଜ କଥା କହୁନି... କିନ୍ତୁ...' 'ଶୁଣ ଚନ୍ଦର୍, ଲାଗୁଛି ଯେମିତି ଆଉ କିଛି ହେବନି । ମୁଁ ମାନସିକ ସ୍ତରରେ ଖୁବ୍ ଅସମର୍ଥ ହେଇଯାଇଚି... ଆଉ କଛି ସ୍ୱୀକାର କରିବାର ସାମର୍ଥ୍ୟ ମୋର ନାହିଁ... 'ଘଟିଥିବା ସବୁ କଥା ଆଉଥରେ କୁହ ସୁଦର୍ଶନା ।'

'ନା, ଏହା ଆଉ ସମ୍ଭବ ନୁହଁ, କିଏ ଏମିତି ଅଛି, ଯାହାକୁ ମନର କଥା ସବୁକିଛି କହିଦେଇ ପାରିବି ! ଦଶଟି କଥା ଅଛି, ସେ ସବୁ ମୋ କଥା, ଏସବୁ ଭିତରୁ ତୁମକୁ କେବଳ ତିନିଟି ହିଁ କହିପାରିବି... ସବୁକିଛି ନୁହଁ । ଆଉ କିଏ ଜଣେ ମିଳିଯାଇପାରେ, ଯାହାକୁ ପ୍ରାୟ ଚାରିଟି କଥା କହିପାରବି... ଆଉ କାହାକୁ ହୁଏତ ଗୋଟିଏ କଥା ହିଁ କହିପାରିବି । କିନ୍ତୁ ଏମିତି କେହିଜଣେ ନାହିଁ, ଯାହାକୁ ମୁଁ ସବୁକଥା କହିଦେଇପାରିବି । ଯିଏ ସବୁ କହିପାରେନା, ସେ ଖୁବ୍ ଏକ୍‌ଲା ହେଇଯାଏ, ନିହାତି ଏକ୍‌ଲାପଣ ତାକୁ ଚାରିଆଡୁ ଘେରିନିଏ । ତା'ର ଏଇଭଳି ବାଧବାଧକତା ଥାଏ ଚନ୍ଦର୍, ଏକଥା କହି ମୋ ହାତ ଧରିନେଇଥିଲା ସିଏ, ତା'ର ଝାଳେଇ ଯାଇଥିବା ଅଙ୍ଗୁଳିମାନ କମ୍ପି ଉଠୁଥିଲା । ପୁଣି କହିଥିଲା, 'ତୁମକୁ ଚିଠି ଲେଖିବି, କିନ୍ତୁ କିଛି ଅନ୍ୟଥା ଭାବିବନି ।'

ମୁଁ ଚାଲି ଯାଇଥିଲି । ସେ ପ୍ଲାଟଫର୍ମର ଅନ୍ଧାର ଭିତରେ ଧୀରେ ଧୀରେ ହଜି ଯାଇଥିଲା...

କିଛିଦିନ ପୂର୍ବରୁ ତା' ପାଖରୁ ଏକ ଚିଠି ଆସିଥିଲା । ଉପରେ ତା' ହାତ ଅକ୍ଷରରେ ଠିକଣା ଲେଖା ହେଇଥିଲା ଓ ଲଫାପାରେ ସେଇ ସହରର ମୋହର ବାଜିଥିଲା । ଆଉ ଲଫାପା ଭିତରେ କେବଳ ଅଲେଖା କାଗଜଟିଏ ଥିଲା... ଯେଉଁଥିରେ କେବଳ କାଗଜ ଭଙ୍ଗା ହେଇଥିବାର ଚିହ୍ନ ବ୍ୟତୀତ ଆଉକିଛି ନଥିଲା....

# ଫାଲ୍‌ତୁ ଲୋକ

ଆଇନ ଯେ ମୋତେ ରକ୍ଷା କରିଥାଆନ୍ତା, ଏଥିରେ ମୋର ସନ୍ଦେହ ଥିଲା । ମୁଁ କୌଣସିମତେ ଦୁନିଆଁର ଆଲୁଅ ଦେଖିପାରିଥିଲି । ସେଇଥିପାଇଁ ସେ ସବୁ କଥା ଭାବିଲେ ମନ ଖୁବ୍ ଭାରାକ୍ରାନ୍ତ ହୁଏ । ମୋ ପିଲାଦିନ ମୋ ପାଇଁ ଥିଲା ଖୁବ୍ ଅଭିଶପ୍ତ ।

ଆଜି ବି ମୋ ଘର ଠିକ୍ ସେଇଭଳି ଅଛି । ବାପା, ମା' ଦୁହେଁ ଥିଲେ ଖୁବ୍ ଅସହାୟ । ମାଆଙ୍କ ଆଖିରେ ଯେତେବେଳେ ଯନ୍ତ୍ରଣାର ଅଶ୍ରୁ ଭରିଯାଏ, ମୁଁ ନିଜର ଆସ୍ଥା ହରେଇବସେ । ବାପା ସମୟେ ସମୟେ ପ୍ରଚଣ୍ଡ କ୍ରୋଧାନ୍ୱିତ ହୋଇଉଠନ୍ତି । ବେଳେ ବେଳେ ସେ ଗୋଇନ୍ଦାମାନଙ୍କ ଭଳି ଫୁସ୍‌ଫୁସ୍ କରି କ'ଣ ସବୁ କହନ୍ତି ଆଉ ମୋ ଛାତି ଥରି ଉଠେ ଏସବୁ ଦେଖିଲେ । କୌଣସି କଥାରେ ଅସମ୍ମତ ହେବାର ଏହା ହେଉଚି

ତାଙ୍କର ଅଭିବ୍ୟକ୍ତି । ତା'ପରେ ପାଟିତୁଣ୍ଡ ଓ ହା'ହଲ୍ଲା । ଏହାପରେ ବାପା କୌଣସି ପ୍ରକାର ଆକ୍ରମଣ କରିବା ପୂର୍ବରୁ ମାଆ ଘରୁ ଛୁରୀ, ଚାକୁ, କଇଁଚି ଓ ଆକ୍ରମଣ କରି ହେଲାଭଳି ଉପକରଣମାନଙ୍କୁ ଲୁଚାବାରେ ଲାଗନ୍ତି । ଲଢ଼ିଲାବେଳେ ମାଆ ମୋଠାରୁ କିଛି ସହାୟତା ନେଇ ନଥାନ୍ତି । ସେଇଥିପାଇଁ ସେମାନଙ୍କର ଏ ଲଢ଼ିବା ମୋତେ ଲୋକ ଦେଖାଣିଆ ଲାଗେନା । ପତି ପତ୍ନୀଙ୍କ ମଧ୍ୟରେ ଏ ଯୁଦ୍ଧ ବହୁ ସମୟ ଯାଏ ଚାଲେ । ପ୍ରତିଟି ଲଢ଼େଇ ଜଣେ ଗୋଇନ୍ଦାଙ୍କ ଭଳି କଥାବାର୍ତ୍ତା କରିବା ପରେ ହିଁ ଆରମ୍ଭ ହେଇଥାଏ । ଚାକୁ, ଛୁରୀ ଓ ଧାରୁଆ ଜିନିଷ ଯେତେ ଲୁଚେଇ ରଖିଲେ ବି ମାଆଙ୍କ ଦେହରୁ କେଉଁଠି ନା କେଉଁଠି କିଛି ରକ୍ତ ବାହାରିଥାଏ । ତା'ପରେ ବାପା ପଶ୍ଚାତାପ କରନ୍ତି କି ନାହିଁ ଜାଣେନା, କିନ୍ତୁ ସେ ସଂଯତ ହେଇଯାଆନ୍ତି । ଏତେ ସଂଯତ ହେଇଯାଆନ୍ତି ଯେ ଜଣେ ଖୁବ୍ ଭଲ ସ୍ୱାମୀ ଭଳି ବ୍ୟବହାର କରନ୍ତି, ଧକେଇ ଧକେଇ କାନ୍ଦନ୍ତି । ମାଆଙ୍କ ଜଙ୍ଘରେ ମୁହଁ ରଖି ଫୁଲି ଫୁଲି କାନ୍ଦୁଥାଆନ୍ତି ଓ ଏ ନାଟକର ଯବନିକାପାତ ବିଛଣା ଉପରେ ହିଁ ହେଇଥାଏ ।

ମୁଁ ଏସବୁକୁ ଦେଖି ଦେଖି ଖୁବ୍ ବିରକ୍ତ ହେଇଯାଇଥିଲି ଓ ଥରେ ସୁଜାତାକୁ କହିଥିଲି- 'ତୁମେ ଯଦି ମାଆ ହେବାକୁ ଚାହଁନି ତେବେ ପତ୍ନୀ ହେବାକୁ ଚାହୁଁଛ କାହିଁକି ? ତୁମେ ଏକଥାରୁ କଛି ବୁଝି ପାରିବନି । ଖୁବ୍ ଅଡୁଆ, ଗଣ୍ଡଗୋଳିଆ । ବାସ୍ତବରେ ଏହା ହେଉଚି ମୋର ନିଜର ପ୍ରେମ ପ୍ରସଙ୍ଗ ।

ଘଟଣାଟି ଏଇମିତି ଯେ ସୁଜାତାକୁ ମୁଁ ଭଲ ପାଇବାରେ କିଛି ପ୍ରତିବନ୍ଧକ ନଥିଲା । ତୃତୀୟ କିମ୍ବା ଚତୁର୍ଥ ଦିନ ଆମ ଦୁହିଁଙ୍କୁ ଖୁବ୍ ନିରୋଳା ହେବାର ସୁଯୋଗ ମିଳିଥିଲା । ଏକାନ୍ତରେ ଦୁହେଁ ଦୁହିଁଙ୍କୁ ପାଇଲେ ପ୍ରେମ ଗଢ଼ି ଉଠିବାକୁ ବେଶୀ ଡେରି ଲାଗେନା । ତା' ଓ ମୋ ଭିତରେ କେବଳ ଶରୀର ବ୍ୟତୀତ ଆଉ କୌଣସି ପ୍ରତିବନ୍ଧକ ନଥିଲା । ପୁରୁଷର ଶରୀର ଖୁବ୍ ଡରକୁଳା ଆଉ ଲାଜକୁଳା ବି । କଥାକଥାକେ ସଂକୁଚିତ ହେଇଯାଏ । ପ୍ରାକୃତିକ ଆବଶ୍ୟକତା ଛଡ଼ା ଏହାକୁ ଟାଣିକର ପ୍ରସ୍ତୁତ କରିବାକୁ ହୁଏ ।

ମୁଁ ଶରୀର ସହ ଏମିତି ଅତ୍ୟାଚାର କରିବାକୁ ଚାହିଁ ନଥିଲି, କାରଣ ସୁନ୍ଦର ଓ କୋମଳ ଜିନିଷ ସହ ଏସବୁ କରାଯାଇପାରେନା ।

ପ୍ରକୃତରେ ଆମେ ଦୁହେଁ ଈଶ୍ୱରର ଶବ ଖୋଜିବା ପାଇଁ ବାହାରିଥିଲୁ । ସେ କହିଲା, ଈଶ୍ୱର ମରିଯାଇଚି, କିନ୍ତୁ ଯେତେବେଳ ପର୍ଯ୍ୟନ୍ତ ତା' ଶବକୁ କୋର୍ଟରେ ପେଶ୍ କରାହେଇନି, ତା'ର ମୃତ୍ୟୁ ଘୋଷଣା କରିହେବନି ।

ଈଶ୍ୱରର ଶବ ଖୋଜିବାରେ ଆମେ ଲାଗିଯାଇଥିଲୁ । ଏଇଥିପାଇଁ ଆମକୁ ମିଳିଯାଇଥିଲା ନିରୋଳା ପରିବେଶ । ଯେତେବେଳେ ଖୋଜିଖୋଜି ତା' ଶବ ଆମକୁ ମିଳିଲାନି ମୁଁ କହିଥିଲି, ''ମୁଁ ତା'ହେଲେ ନିଜର ହତ୍ୟା କରିଦେଉଚି ଆଉ ତୁମେ ଏହାକୁ ଈଶ୍ୱରର ଶବ ବୋଲି ଘୋଷଣା କରିଦିଅ । ବହୁତ ବଡ଼ କାମଟେ ହେଇଯିବ ।''

ତା'ପରେ ସେ କାନ୍ଦି କାନ୍ଦି କହିଥିଲା, 'ଈଶ୍ୱର ବ୍ୟତୀତ ରହିବା ସମ୍ଭବ, କିନ୍ତୁ ତୁମ ବିନା ନୁହଁ ।'

ତା'ହେଲେ ଆସ, 'ପ୍ରକୃତ ଶବ ଖୋଜିବା' କହି ମୁଁ ବଣବୁଦାରେ ପଶି ମରିଯାଇଥିବା ଗୋଟେ ପ୍ରଜାପତିକୁ ଧରି ଆଣିଥିଲି । ସେ ଥିଲା ପ୍ରେମର ପ୍ରକୃତ ମୁହୂର୍ତ୍ତ । ତା' ଓଠ ଦୁଇଟି ମରିଯାଉଥିବା ପ୍ରଜାପତିଟେ ଭଳି କମ୍ପି ଉଠୁଥିଲା ଏବଂ ତା' ଆଖିଡ଼ୋଳା ଯୋଡ଼ାକ ମାଛ ଭଳି ଯେମିତି ଚୁପ୍‌ଚାପ୍ ବୁଡି ଯାଇଥିଲା ପ୍ରେମର ଅନୁପମ ଜଳ ଗହଳରେ । ସେତେବେଳେ ଆମେ ଦୁହେଁ ଏକ ଐତିହାସିକ ପୁରୁଣା ଭଗ୍ନକୋଠୀ ପଛରେ ଥିଲୁ- ସେଇ ମୁହୂର୍ତ୍ତ ବିଷୟରେ ମୋର କେବଳ ମନେଅଛି ଏତିକି ।

ସେଇଠି ତା'ସହ ମୋର ପ୍ରଥମ ଥର ପାଇଁ ମତାନ୍ତର ହେଇଥିଲା । ତାକୁ ଲାଗୁଥିଲା ଯେ ମୁଁ ତାକୁ ଭଲପାଏନା । ମୋ ମନରେ ବି ସଂଶୟ ଜାଗିଥିଲା । ମୋ ଶରୀରକୁ ମୁଁ ନିଶ୍ଚିତ ପ୍ରସ୍ତୁତ କରେଇ ନେଇଥାଆନ୍ତି ଯଦି ପତ୍ନୀ ହେବା ପାଇଁ ବୟସରେ ସେ ମୋ'ଠାରୁ ସାନ ହେଇଥାଆନ୍ତା । କିନ୍ତୁ ଆମ ଭିତରେ ଏମିତି କିଛି ସମ୍ଭାବନା ନଥିଲା । ସେ ବୟସକୁ ପଛକୁ ବି ଫେରାଇ ନେଇପାରି ନଥାନ୍ତା, କି ମୋତେ କଥା ଦେବାଭଳି ସ୍ଥିତିରେ ବି ନଥିଲା ।

''ଆମେ କାହିଁକି ହତ୍ୟାର ଅଂଶୀଦାର ହେବା ?'' ମୁଁ ଏହା କହିଥିଲି । ସେ କଛି ବୁଝିପାରି ନଥିଲା । ପ୍ରେମରେ ନାରୀ ଖୁବ୍ କମ୍ ବୁଝିବା ସ୍ଥିତିରେ ଥାଏ । ଏହା ହୁଏତ ତା'ପାଇଁ ଲାଭଦାୟକ ବିବଶତା । କିନ୍ତୁ ମୋ ପାଇଁ ନୁହଁ ।

ମୁଁ ତାକୁ ବହୁତ ବୁଝାସୁଝା କଲି । ନାରୀ ଯେତିକି ବୁଝେ ସେତିକି କାନ୍ଦେ । ଯେଉଁ ସ୍ତ୍ରୀ ଯେତେ କାନ୍ଦିପକାଏ, ସେହି ଅନୁସାରେ ସେ ବ୍ୟକ୍ତିତ୍ୱ ସମ୍ପନ୍ନ ହେଇଯାଇଥାଏ । ତା'ର କାନ୍ଦିବା ମୋତେ ଏଇଥିପାଇଁ ଭଲ ଲାଗିଥିଲା । ଏସବୁ ପରେ ବି ଈଶ୍ୱରର ଶବ ଖୋଜାଯାଇ ପାରିଥାଆନ୍ତା ।

ତା' ମୋ ଭିତରେ କିଛି ବର୍ଗଗତ ପ୍ରଭେଦ ଥିଲା । 'ତୁମେ ମୋ ଦୁଃଖ ବୁଝି ପାରିବନି ସୁଜାତା, ଯେତେବେଳେ ମୁଁ ଅବୋଧ ଶିଶୁଟି ରୂପରେ ଗର୍ଭରେ ଥିଲି । ଦିନେ ମୋତେ ଶେଷ କରିଦେବା ପାଇଁ ଆକ୍ରମଣ ହେଇଥିଲା ।

ବାପା ବାରଣ୍ଡାରେ ଘୂରି ବୁଲୁଥିଲେ । ମୋ ଚାରିପଟେ ହୁଏତ ଥିବ ଭୀଷଣ ଅନ୍ଧାର, ଘର ଭିତରେ ମାଆ, ଆଉ ସେଇ 'ମିଡ୍ ୱାଇଫ୍' ଯିଏ ପାର୍କର ଗୋଟେ କୋଣରେ ରହେ । ସେଇଥିପାଇଁ ସେବାଟେ ଗଲାବେଳେ ଖୁବ୍ ଡର ଲାଗେ । ସେ ମୋ ଉପରେ ଆକ୍ରମଣ କରିଥିଲା, ଯାହାର ଚିହ୍ନ ଏବେବି ମୋ ତାଳୁ ଉପରେ ଅଛି । ତା' ହାତରେ କୌଣସି ଧାରୁଆ ଅସ୍ତ୍ର ଥିବ, ଯାହା ସାହାଯ୍ୟରେ ସେ ମୋର କୌଣସି ଅଙ୍ଗ ଛିନ୍ନ କରିବାକୁ ଚାହିଁଥିବ । ମୁଁ କ'ଣ ଜାଣିପାରିଥିଲି ଏସବୁ ? ତାହା ଥିଲା ସେମାନଙ୍କର ଅସ୍ତିତ୍ୱ ନିମନ୍ତେ ଏକ ଲଢ଼େଇ, କିନ୍ତୁ ଏସବୁ ସତ୍ତ୍ୱେ ବି ମୁଁ ମରିନଥିଲି, ବଞ୍ଚି ଯାଇଥିଲି ।

ଏହା ପୂର୍ବରୁ ଅବଶ୍ୟ ବାପା ଓ ମାଆ ଅନ୍ୟ କିଛି ଉପାୟ କରିଥିଲେ । କିନ୍ତୁ ଏ ସମସ୍ତ ଚକ୍ରାନ୍ତ ବେକାର ହେଇଯାଇଥିଲା, ମୋର ଅଘୋଷିତ ମୃତ୍ୟୁ ସେମାନଙ୍କୁ ପ୍ରାପ୍ତ ହେଉନଥିଲା ।

ତୁମେ ହୁଏତ ବୁଝିପାରିବନି, ଖୁବ୍ ଖୁନ୍ ଖରାପ ହେଇଥିଲା, ବଡ଼ ବଡ଼ ଆକ୍ରମଣର ଶିକାର ହେଇଥିଲି ମୁଁ, ରକ୍ତର ନଦୀ ବହିଥିଲା, ଶରଣାର୍ଥୀ ରୂପେ ନିଜ ଅସ୍ତିତ୍ୱର ଘୋଷଣା କରିଥିଲି ମୁଁ । ସେ ବି କିଛି ବୁଝିପାରି ନଥିଲା, କାରଣ ଅସ୍ତିତ୍ୱର ଏଇ ସଂକଟ ସେ କେବେ ଭୋଗିନଥିଲା । ସେଥିପାଇଁ ବାପା ଓ ମାଆଙ୍କର ସମ୍ଭୋଗ କରିବା ଏକ ଭିନ୍ନ ସ୍ଥିତି । ସେମାନେ ସମ୍ଭୋଗ କରନ୍ତି କିନ୍ତୁ ଏହାକୁ ନିର୍ବାହ କରିପାରନ୍ତିନି । ସବୁବେଳେ ବିପଦକୁ ଡରୁଥାଆନ୍ତି । ସେଥିପାଇଁ ସେମାନେ ଜଣେ ଅନ୍ୟଜଣକ ସାମ୍ନାରେ ଖୁବ୍ ନିରୀହ । ଜଣକୁ ଛାଡ଼ି ଅନ୍ୟଜଣକର କିଛି ଚାରାହିଁ ନାହିଁ, କାରଣ ଉଭୟେ ସମ୍ମିଳିତ ଭାବେ ଏଇ ଚକ୍ରାନ୍ତରେ ସାମିଲ୍ ଥିଲେ ।

ତୁମେ ତ ଏ ସହର ବିଷୟରେ ବିଶେଷ କିଛି ଜାଣନା । ବିଭିନ୍ନ ପ୍ରକାର ସୁବିଧା ଭୋଗ କରୁଥିବା ଲୋକମାନେ ଏ ସହରକୁ ବାଣ୍ଟି ନେଇଛନ୍ତି । ସେମାନଙ୍କର ସଂଖ୍ୟା କମ୍ । ସେମାନଙ୍କ ମଧ୍ୟରୁ ମୁଁ ବି ଜଣେ, ସେଇଥିପାଁ ତ ମୁଁ ଫାଲ୍ତୁ ଲୋକଟେ । ଏ ସହରର କିଛି ଠିକ୍ ଠିକଣା ନାହିଁ । ଯିଏ ଯେତେ ଚାହିଁଲା ଗୁଣ୍ଡେଇ ନେଇ ନିଜ ପାଇଁ ସାଇତି ଦେଇଛି । ସେମାନେ ରାସ୍ତାରେ ଘୂରି ବୁଲୁଚନ୍ତି; ସହରରେ ଚାରିଆଡ଼େ ଘୂରି ବୁଲୁଛନ୍ତି । ଆମେ କେବଳ ଶୋଭାଯାତ୍ରା ବାହାର କରନ୍ତି । କିନ୍ତୁ ସେମାନେ ସଡ଼କକୁ ତାଙ୍କ ଇଛାନୁସାରେ ଇଲାଷ୍ଟିକ୍ ଭଳି ବ୍ୟବହାର କରନ୍ତି । ସେମାନେ ଯିବାବେଳେ ରାସ୍ତା ତାଙ୍କ ଇଚ୍ଛାନୁସାରେ ସଙ୍କୁଚିତ ପ୍ରସାରିତ ହେଇଯାଇଥାଏ । ସେମାନେ ଖୁବ୍ ଜଲ୍‌ଦି ଘରେ ପହଞ୍ଚିଥାଆନ୍ତି । ତାଙ୍କ ରାସ୍ତା କଡ଼େ କଡ଼େ ସମ୍ଭ୍ରାନ୍ତ ଫୁଲଗଛମାନ ହିଁ ଶୋଭା ପାଉଥାଏ ।

ଆମ ରାସ୍ତା ବହୁତ ସଂକୀର୍ଣ୍ଣ । ଯେଉଁଠି ଅଶ୍ୱତ୍ଥ କି ନିମଗଛ ଥାଏ । ଏଇଭଳି ଏକ ଗଛ ମୂଳରୁ ମୁଁ ଏକ ମୂର୍ତ୍ତି ଉଠେଇ କହିଥିଲି 'ଈଶ୍ୱରର ଶବ ମିଳିଯାଇଚି', ମୁଁ ଖୁବ୍ ଉତ୍ତେଜିତ ହେଇ ଉଠିଥିଲି ।

ସେ ହସିଥିଲା । ଏହାପରେ ସେ ମୋ ସହ ଶବ ଖୋଜିବା ବନ୍ଦ କରିଦେଇଥିଲା । ଧୀରେ ଧୀରେ ସେ ମୋ ଠାରୁ ଦୂରେଇ ଯାଇଥିଲା । ତା'ପରେ ବାହା ହେଇ ଯାଇଥିଲା ଅନ୍ୟଜଣକୁ । ଏହା ହୁଏତ ଥିଲା ଖୁବ୍ ଛୋଟ ଘଟଣା, କିନ୍ତୁ ମୋତେ ଖୁବ୍ ବାଧିଥିଲା । ଆଉ ହଠାତ୍ ଦିନେ ତା' ସହ ତା' ସ୍ୱାମୀ ଥିବାବେଳେ ଭେଟ ହେଇଥିଲା ଓ ସେ ଖୁବ୍ ଶାଳୀନତାର ସହ 'ଏ ମୋ ସ୍ୱାମୀ' କହି ପରିଚୟ କରାଇ ଦେଇଥିଲା । ତା' ସ୍ୱାମୀ ଥିଲେ ଖୁବ୍ ଭଦ୍ର । କିନ୍ତୁ କେଜାଣି କାହିଁକି ତା' ଆଖିର ତଳପତା ଖାଲି ଫଡ଼୍‌କି ଚାଲିଥିଲା, ସୁଜାତାର ସ୍ୱାମୀ ବାରମ୍ବାର ସୁଜାତା'ର ଫାଙ୍କା ପିଠି ଉପରେ ହାତ ରଖୁଥିଲେ । ଆଉ ସେଉଠୁ ତାଙ୍କ ହାତ ଧୀରେ ଧୀରେ ତଳକୁ ଖସି ନିତମ୍ବ ମୂଳ ପର୍ଯ୍ୟନ୍ତ ଯାଇ ପୁଣି ଅଲଗା ହେଇଯାଉଥିଲା;

ହୁଏତ ଅଜାଣତରେ ।

'ଆପଣ କରନ୍ତି କ'ଣ ?' ପଚାରିଥିଲେ ମୋତେ ତା' ସ୍ୱାମୀ ।

ସାମାନ୍ୟ ଅପ୍ରସ୍ତୁତ ହେଇ ମୁଁ କହିଥିଲି, 'ମୁଁ ଆମେରିକୀୟ ନିଗ୍ରୋ ସମସ୍ୟା ବିଷୟରେ ଅଧ୍ୟୟନ କରେ ।'

'ଆପଣମାନେ ବି ବେଶ୍ କାମରେ ଲାଗିଛନ୍ତି' ସେ ହସିଦେଇ କହିଥିଲେ ।

'ଯାଙ୍କ ପାଖରେ ସମୟ ଅଛି' ସେ କହିଥିଲା ।

'ମୁଁ ବେକାର ଲୋକଟେ' କହିବାରୁ ଦୁହେଁ ହସି ଉଠିଥିଲେ । ସେଦିନ ତା' ସ୍ୱାମୀ ବି ମୋତେ ଲିଫ୍ଟ ଦେଇଥିଲେ । ନିଜ ଘରକୁ ଯିବାବେଳେ ଉତ୍ତପ୍ତ ରାସ୍ତାର ଏକ ମୋଡ଼ରେ ମୋତେ ଛାଡ଼ି ଦେଇଥିଲେ । ଯେତିକି ସମୟ ସହିବା କଥା ସହି ନେଇଥିଲେ, ହୁଏତ ଏହା ଆଗକୁ ସେ ମୋତେ ଆଉ ସହ୍ୟ କରିବାକୁ ପ୍ରସ୍ତୁତ ନଥିଲେ ।

ଘରେ ପହଞ୍ଚିଲା ବେଳକୁ ଠିକ୍ ସେମିତି ଅବସ୍ଥା । ବାପା ଗୋଇନ୍ଦାଙ୍କ ଭଳି କଥାବାର୍ତ୍ତା କରୁଥିଲେ । ବଡ଼ଭାଇ ଓ ଭଉଣୀ ଉପର ଘରେ ଥିଲେ । ସେମାନଙ୍କ ସହ ମୋର ପଡୁନଥିଲା । କାରଣ ତାଙ୍କୁ ଜାଣିଶୁଣି ଏ ଦୁନିଆଁକୁ ଅଣାଯାଇଥିଲା ଆଉ ମୁଁ ଆକ୍ରମଣର ଶିକାର ହେଇଥିଲି । ସେମାନଙ୍କର ଅବସ୍ଥା ଭଲ ନଥିଲା । ସେମାନେ ଥିଲେ ଘରେ ଶରଣାର୍ଥୀ । କିନ୍ତୁ ଲଜ୍ଜାହୀନ ଭାବେ ନିଜ ଅଧିକାର ସାବ୍ୟସ୍ତ କରୁଥିଲେ । ସୁବିଧାବାଦୀ ବର୍ଗ ତାଙ୍କୁ ସେଇ ଅବସ୍ଥାରେ ନେଇ ପହଞ୍ଚାଇ ଦେଇଥିଲେ । ସେମାନଙ୍କ ପାଖରେ ନିଜର ବୋଲି କିଛି ନଥିଲା । ଖବରକାଗଜର କଟିଂ ହିଁ ଥିଲା ତାଙ୍କର ଆଦର୍ଶ । ଖବରକାଗଜ ରୂପରେ ଥିଲା ତାଙ୍କର ପୋଷାକ ଓ ପୋଷାକ ରୂପରେ ଥିଲା ବୁଦ୍ଧି ।

ପୁଣି ଦିନେ ବାପା ଖୁବ୍ ପାଟିତୁଣ୍ଡ କରିଥିଲେ । ମାଆ ତାଙ୍କୁ ଗାଧୁଆଘରେ ବନ୍ଦ କରି ଦେଇଥିଲେ । ଏହା କେମିତି ସମ୍ଭବ ହେଲା ଜାଣେନା । ବାପା ଭିତରୁ ଦୁଆରକୁ ବାଡ଼ାଉଥିଲେ ଓ ହତ୍ୟା କରିବାର ଧମକ ଦେଇ ଚାଲିଥିଲେ ।

ସେହିଦନ ସୁଜାତା ସହ ଭେଟ ହେଲା । ସେ ଭୟଗ୍ରସ୍ତ ଥିଲା । ହଠାତ୍ କହିଲା- ''ଆମେ ଦୁହେଁ ଏତେଶୀଘ୍ର ଏସବୁ ଚାହୁଁନଥିଲୁ ।'' ମୁଁ ଶୁଣିବା ମାତ୍ରେ ଥରି ଉଠିଥିଲି । ପୁଣି ସେଇ ଆକ୍ରମଣ ହେବ, ଖୁନ୍ ଖରାପ ହେବ, ତା' ସ୍ୱାମୀ ହୁଏତ ଏଥିପାଇଁ ଖୁସି ସହକାରେ ଜଣେ ଗୋଇନ୍ଦା ଭଳି ଭଦ୍ରାମିର ସହ ଆକ୍ରମଣ କରିବା ଯୋଜନାରେ ଲାଗିପଡ଼ିଥିଲା ।

ସୁଜାତା ପ୍ରତି ମୋର ଆକର୍ଷଣ ବହୁତ ବଢ଼ିଯାଇଥିଲା । ଇଚ୍ଛା ହେଲେ ପ୍ରାୟ ତା' ପାଖକୁ ଚାଲି ଯାଉଥିଲି । ସମୟ ଦେଖି ତାକୁ ବୁଝେଇବାକୁ ଚାହିଁଥିଲି । 'ତୁମେ ପ୍ରତିଦିନ ଏଠାକୁ ଆସନି, କେଜାଣି ସେ କ'ଣ ଭାବୁଥିବେ'- ସୁଜାତା କହିଲା । 'ଏ ସନ୍ଦେହର ସମୟ ନୁହଁ' ମୁଁ ଏତିକି ମାତ୍ର କହିଥିଲି ।

ଯେଉଁଦିନ ତା' ଅବସ୍ଥା ଭଲ ନଥିଲା ସେଦିନ ମୁଁ ନିଜକୁ ସମ୍ଭାଳିପାରି ନଥିଲି ।

ତା'ପେଟ ବେଶ୍ ଫୁଲି ଯାଇଥିଲା ଓ ପାଖରୁ ଔଷଧର ଗନ୍ଧ ଆସୁଥିଲା ।

ଖବର ମିଳିଲା ସେ ପ୍ରସୂତି ଖାନାରେ ପହଞ୍ଚି ସାରିଚି । ଅପରେସନ୍ ନିହାତି ଜରୁରୀ । ସେ ପୁଅଟିଏ ଜନ୍ମ କରିଥିଲା । ମୁଁ ସେଠାରେ ପହଞ୍ଚିଥିଲି । ମୁଁ ସେଇ ପିଲାଟିକୁ ଦେଖିବାକୁ ଚାହୁଁଥିଲି ।

ସେଠି ପହଞ୍ଚିଲି । ସେ ଖୁସି ହେଲାନି, ହୁଏତ ମୋ ଆସିବା ତାକୁ ଭଲ ଲାଗିନଥିଲା । 'ପିଲା କାହିଁ ? ତୁମକୁ ନୁହଁ, ତାକୁ ଭେଟିବାକୁ ଆସିଚି ।'

'ଝୁଲଣାରେ ଅଛି', ରୁକ୍ଷ ସ୍ୱରରେ ଉତ୍ତର ଦେଲା ସେ ।

ଖୁବ୍ ନରମ, ସୁନ୍ଦର ଓ ମୁଲାୟମ୍ ପିଲାଟି ନିର୍ଦ୍ଵନ୍ଦ୍ୱରେ ଶୋଇଯାଇଥିଲା ନିଜର ହାତମୁଠା ବନ୍ଦ କରି । ରେଶମୀ ଲୋମରେ ତା ଦେହ ଲାଗୁଥିଲା ଖୁବ୍ ଅବୋଧ । ମୁଁ ଲୁଚି ଲୁଚି ପିଲାଟିର ପ୍ରତି ଅଙ୍ଗ ପ୍ରତ୍ୟଙ୍ଗକୁ ହଲେଇବାରେ ଲାଗିଲି । ଏକଥା ଭାବି ଉଠି ମୁଁ ଶିହରିତ ହେଇଉଠିଥିଲି ଯେ ପିଲାଟି ଦେହରେ କେଉଁଠି କଇଁଚି, ଛୁରୀ ଆଦିର ଦାଗ ନାହିଁ ତ ? କିମ୍ବା କୌଣସି ଅଙ୍ଗ...

ମୋର ଏ କାର୍ଯ୍ୟକଳାପରେ ତାକୁ କେତେ ଘୃଣା ଆସୁନଥିବ ସତେ ? ହଠାତ୍ ତା' ଶବ୍ଦ ଶୁଣିଲି । 'ଭଲଭାବେ ଦେଖିନିଅ, ଠିକ୍ ମୋରି ପରି ତ ?' ତା' ଚେହେରାରେ ଏକ ଅପୂର୍ବ ଲାବଣ୍ୟ ଥିଲା । ମୁଁ ପୁଣି ଘାବରେଇ ଗଲି । ଏହା କୌଣସି ଚକ୍ରାନ୍ତ ନୁହଁ ତ ?

'ତୁମେ ଆଶ୍ଚର୍ଯ୍ୟ ହେଉଚ ତ', ସେ କହିଲା ।

'ନାଁ ତ, ଏହାକୁ କିଏ ଅଟକେଇ ପାରିଥାଆନ୍ତା ? ବର୍ତ୍ତମାନ ତୁମକୁ ଏହା ସହିତ ବୁଝାମଣା କରିବାକୁ ହେବ । ତୁମେ ଏବେ କରୁଛ ମଧ୍ୟ...'

'ସେ ପ୍ରଶ୍ନ କଲା କାହିଁକି ?'

'କାରଣ ଶରଣାର୍ଥୀମାନଙ୍କର ସଂଖ୍ୟା ବହୁତ ଅଧିକ ଏବଂ ତୁମର କମ୍ । ଯାହା ତୁମ ବର୍ଗ ଚାହେଁନା, ତା' ସାଧାରଣତଃ ହେଇଥାଏ । କେବଳ ଅସୁବିଧା ଏତିକି ଯେ ତୁମେ ଏଇ ଘଟଣାକୁ ଚାହିଁ ବି ବନ୍ଦକରି ପାରନା ।'

ସେ ଚୁପ୍‌ଚାପ୍ ଶୁଣି ଚାଲିଥିଲା । ତା' ଶରୀରରେ ଥିଲା ସେଇମିତି ଉଜ୍ଜ୍ୱଳତା । ଆଉ ଏବେ ସେ କାହାରି ପ୍ରେମିକା ନଥିଲା... ମୁଁ ବି ଏହାଛଡ଼ା ଆଉକିଛି ଅଧିକ ଚାହୁଁନଥିଲି । କେବଳ ଏତିକି ଯେ ଯାହାକିଛି ବି ଘଟିଥାଆନ୍ତା ସେ ସବୁ ହିଁ ମୋର ହେଇଥାଆନ୍ତା ।

# ମୁଁ

ଏ ଜଣେ ମଦ୍ୟପର କଥା । ଏମିତି ହେଲା ଯେ ଦିନେ ସନ୍ଧ୍ୟାରେ ମଦ୍ୟପାନର ହାଲ୍‌କା ନିଶାରେ ଅତ୍ୟନ୍ତ ଗହନ କଥାଟିଏ ସେ ଶୁଣାଇଲା । ଏହାଥିଲା ଖୁବ୍ ଆଭିଜାତ୍ୟପୂର୍ଣ୍ଣ ଡ୍ରିଙ୍କ୍‌ପାର୍ଟି । ଯେଉଁ ବ୍ୟକ୍ତିମାନେ ଆସିଥିଲେ, ସେମାନେ ଥିଲେ ନିଜ ନିଜ କ୍ଷେତ୍ରରେ ବେଶ୍ ପ୍ରତିଷ୍ଠିତ ଥିଲେ । ଆୟୋଜକଙ୍କର ଛୋଟ ସୁନ୍ଦରିଆ ପୁଅଟି ସବୁ ଅତିଥିମାନଙ୍କୁ ଫ୍ଲାଟ୍ ପର୍ଯ୍ୟନ୍ତ ପାଛୋଟି ଆଣୁଥିଲା । କାରଣ ଏ ସ୍ଥାନ ଥିଲା ନୂଆ ଏବଂ କୌଣସି ଅତିଥିଙ୍କୁ ଆୟୋଜକଙ୍କ ଘର ଜଣାନଥିଲା । ସେଇ ଗୁଲୁଗୁଲିଆ ସୁନ୍ଦର ପିଲାଟି ବିଲ୍‌ଡ଼ିଂର ଗେଟ୍‌ପାଖରେ ସତର୍କତାର ସହ ଛିଡ଼ା ହୋଇଥିଲା । ଖୁବ୍ ଚଳଚଞ୍ଚଳ ଭାବେ ସେ ଅତିଥିମାନଙ୍କୁ ସ୍ୱାଗତ କରି ନିଜେ ଲିଫ୍ଟ ଚଲାଇ ଉପରେ ପହୁଁଞ୍ଚାଇ ଦେଉଥିଲା ।

ଏ ଅଞ୍ଚଳ ଥିଲା ଆଭିଜାତ୍ୟବର୍ଗର । ଆକାଶଛୁଆଁ ସୁଉଚ୍ଚ ଅଟ୍ଟାଳିକାମାନ ଚାରିଆଡ଼େ ଦଣ୍ଡାୟମାନ । ସାମାନ୍ୟ ଅନ୍ଧାର ଆଭାସ ଓ ସବୁଦ୍ରର କୁହୁଡ଼ି ଆକାଶ ପର୍ଯ୍ୟନ୍ତ ପରିବ୍ୟାପ୍ତ । ସ୍ଥାନେ ସ୍ଥାନେ ଅଟ୍ଟାଳିକାମାନଙ୍କର ଝରକାରୁ ଧଳାଆଲୁଅ ବିଚ୍ଛୁରିତ ହେଉଥିଲା । କିନ୍ତୁ ଚାରିଆଡ଼େ ନିଃଶବ୍ଦତା ହିଁ ଘେରି ରହିଥିଲା । ବାମପଟେ ଆରବସାଗର ଏକ ବାଲୁକାପ୍ରାନ୍ତର ସମ ବିଛେଇ ଯାଇଥିଲା । ପବନ ଜୋର୍‌ରେ ବହୁଥିଲା । ଅନ୍ଧକାର ଓ ଧୂଆଁଳିଆ ବାତାବରଣ ହେତୁ ସମୁଦ୍ରର ଲହରୀମାନଙ୍କର ବ୍ୟାକୁଳତା ବି ଥିଲା ବେଶ୍ ଶାନ୍ତ ।

ଆୟୋଜକ ନିଜେ ଢାଳି ଚାଲିଥିଲେ । ସମସ୍ତେ ପିଇ ପିଇ ଦେଶ ଦୁନିଆଁ କଥାରେ ହିଁ ବ୍ୟସ୍ତ ଥିଲେ । ମଝିରେ ମଝିରେ କଥାର ଖିଅ ମଧ୍ୟ ଛିଣ୍ଡି ଯାଉଥିଲା । କେତେବେଳେ ଫିଲ୍ମ ସମାରୋହ କଥା ଉଠୁଥିଲା, କେତେବେଳେ ଇନ୍ଦିରା ଗାନ୍ଧୀ ଓ ନିଜ ଲିଙ୍ଗସ୍ତ୍ରୀଙ୍କ କଥା । କିନ୍ତୁ କେହି କାହାରି ପକ୍ଷଧର ଭଳି ଜଣାପଡୁନଥିଲେ । ଏ ଗୋଷ୍ଠୀ ଏଇଥିପାଇଁ ସବୁବେଳେ ମହତ୍ତ୍ୱପୂର୍ଣ୍ଣ ଜଣାପଡ଼ନ୍ତି । କାରଣ ଏମାନେ କେବେ କାହାରି ପକ୍ଷଧର ନୁହଁନ୍ତି । କଥା ଏମିତି ବୁଲେଇ ବଙ୍କେଇ ଆସୁଥିଲା ଯେ ତାହା କେବଳ କଥାରେ ହିଁ ଥିଲା ସୀମିତ । ନିଶା ଯେତେବେଳେ ଧରିଲା ସମସ୍ତେ କିଛିଟା ଅବଶ ହେଲେ କିନ୍ତୁ କଥାବାର୍ତ୍ତାରେ କ୍ଷିପ୍ରତା ବଢ଼ିଚାଲିଲା । ଧୀରେ ଧୀରେ ଯିବା ସମୟ ଆସିଲା, ଲୋକମାନେ ପାଖାପାଖ ହୋଇ ଟେବୁଲ ପାଖରେ ପହଞ୍ଚିବାର ସୁଯୋଗ ପାଇଥିଲେ । ସେମାନେ ପୁଣି ପିଇବାରେ ଲାଗିଲେ । ଅତିଥିମାନଙ୍କର ମଣ୍ଡଳୀ ସଂକୁଚିତ ହୋଇ ଆସୁଥିଲା ଓ ଅସଲ କଥା ଆରମ୍ଭ ହେଉଥିଲା । ପାର୍ଟି ଜମି ଆସିଥିଲା ଓ ଆୟୋଜକ ଗୋଟେ କଥା ଅନ୍ୟଜଣକ କଥାର ଜବାବ୍‌ରେ ଶୁଣାଉଥିଲେ ।

ଜଣେ ସାହେବ ଥିଲେ । ଏମିତି ଏକ ପାର୍ଟିରୁ ଫେରିଥିଲେ । ନିଶା ଟିକିଏ ସବାର୍ ହୋଇଯାଇଥିଲା, କିନ୍ତୁ ପୂରା ଆଉଟ୍ ନୁହଁ । ସେ ଯେବେ ବି ଡ୍ରିଙ୍କ ପାର୍ଟିକୁ ଯାଉଥିଲେ ଅନେକ ଆୟୋଜକଙ୍କୁ ତାଙ୍କର ଶୋଇବା ପାଇଁ ବି ବନ୍ଦୋବସ୍ତ କରିବାକୁ ପଡୁଥିଲା । ସେଥର ଯେମିତି ପାର୍ଟି ସରିଆସିଲା ବେଳକୁ ସେଇ ସାହେବଙ୍କ ସହ ତାଙ୍କ କୋକାଲିଟିକୁ ଯିବାବାଲା ସାଙ୍ଗ କିଛି ଥିଲେ । ସେମାନଙ୍କ ସହ ସେ କାର୍‌ରେ ଚାଲିଗଲେ । ମନମଉଜିଆ ସାଙ୍ଗମାନେ ମଜା ଦେଖିବାକୁ ସେଇ ଭଦ୍ରବ୍ୟକ୍ତିଙ୍କୁ ତାଙ୍କ ଘର ସାମ୍ନାରେ ନଛାଡ଼ି ଗଳିରେ ଛାଡ଼ିଦେଲେ । ସେଉଠୁ ଏପଟେ ସେପଟେ ଗୋଡ଼ପକେଇ ହଲି ହଲି ସେ ନିଜ ଘର ସାମ୍ନାରେ ପହଞ୍ଚିଲେ । ରାତିରେ ଡ୍ୟୁଟି କରିବାକୁ ବାହାରିଥିବା ପୋଲିସ ତାଙ୍କୁ ଦେଖିଲା ଓ ତାଙ୍କୁ ସତର୍କତାର ସହ ନିରୀକ୍ଷଣ କଲା ।

ନିଜ ଘରର ସିଡ଼ି ଚଢ଼ି ସେ ଦୁଆରର ହୋଲ୍‌ରେ ଚାବି ଲଗାଇଲେ । ହାତରୁ ଖସି ଚାବି ତଳେ ପଡ଼ିଲା । ଅଣ୍ଡାଳି ଅଣ୍ଡାଳି ଚାବିଟିକୁ ଉଠାଇଲେ ଏବଂ ପୁଣି ଲଗାଇଲେ । ଚାବି ହୋଲ୍ ମଧ୍ୟରେ ନ ପଶି ଏପଟେ ସେପଟେ ହେଉଥିଲା । ପୋଲିସକୁ କିଛିଟା ସନ୍ଦେହ

ହେଲା । ସେ ତାଙ୍କ ପାଖରେ ପହଞ୍ଚିବାରୁ ତାଙ୍କର କିଛିଟା ହୋସ୍ ଆସିଲା । ପୋଲିସ ହସି ହସି କହିଲା, ''ମହାଶୟ, ନିଜ ଘରକୁ ଯାଆନ୍ତୁ ।''

'ଏହା ମୋ ଘର ।' ସେ ହଡ଼ବଡ଼ ସ୍ୱରରେ କହିଲେ ।

ପୋଲିସ ତାଙ୍କୁ କାନ୍ଧପାଖରୁ ଧରିନେଲା ଓ ସାମ୍ନାପଟକୁ ଘୂରେଇନେଇ କହିଲା, ''ଏଇଆ କହି ଏଠାକୁ ବହୁତ ଲୋକ ଆସନ୍ତି । ତୁମ ଘର ଯଦି ଏଇଟା ତେବେ ଚାବି କାହିଁକି ଲାଗୁନି ?''

''ଆପଣ ବିଶ୍ୱାସ କରନ୍ତୁ, ଏହା ହେଉଛଇ ମୋ ଘର । ଏ ଦୁଆର ଖୋଲିବାମାତ୍ରେ ମୋ ଡ୍ରଇଂରୁମ୍ ଆସିବ । ଡ୍ରଇଂରୁମ୍‌ରେ ଗୋଟେ ବଡ଼ ସୋଫା ଅଛି, ଦିଟା ଛୋଟ ସୋଫା, କଲିନ୍ ଅଛି, କୋଣରେ ଲ୍ୟାମ୍ପ । କାର୍ଣ୍ଣିସ୍ ଉପରେ ଗୌତମ ବୁଦ୍ଧଙ୍କର ପିତଳ ମୂର୍ତ୍ତି ଅଛି । ଏହାଠାରୁ ଆଉ ବେଶୀ ପ୍ରମାଣ କ'ଣ ଦେଇପାରିବି ?'' ସେ କହିଲେ ।

''ଠିକ୍ ଅଛି ଖୋଲ, ଦେଖିବା, ତୁମେ ଯାହାକହୁଛ ଠିକ୍ କି ନୁହଁ ।'' ପୋଲିସ କହିଲା ।

ସେତେବେଳକୁ ତାଙ୍କର ହୋସ୍ ଆସିଯାଇଥିଲା । ଏଥର ଚାବି ଲଗାଇବା ମାତ୍ରେ ଲକ୍ ଖୋଲି ଯାଇଥିଲା । ଦୁଆର ଖୋଲି ସେ ପୋଲିସ ସହ ଡ୍ରଇଂରୁମ୍‌ରେ ପହଞ୍ଚି ଯାଇଥିଲେ ଏବଂ ବିଜୁଳି ଜଳାଇଲେ, ''ଦେଖନ୍ତୁ, ଏସବୁ ଠିକ୍ ଅଛି କି ନାହିଁ ?''

'ହଁ ଅଛି ।' ପୋଲିସ କିଛି ଚିନ୍ତାକରି କହିଲା- ''ହଁ ଏସବୁ ତ ସମସ୍ତଙ୍କ ଡ୍ରଇଂରୁମ୍‌ରେ ସାଧାରଣତଃ ଥାଏ...''

ତାଙ୍କୁ ଲାଗିଲା ଯେ ପୋଲିସ କିଛି ବଦମାସୀ କରବାକୁ ଚାହୁଁଛି । ପୁଣି ରାତି ତିନିଟାବେଳେ ସେ ହଙ୍ଗାମା କରି ଅସୁବିଧାରେ ପଡ଼ିବାକୁ ଚାହୁଁନଥିଲେ । ସେଉଠୁ କହିଲେ, ''ଠିକ୍ ଅଛି, ଏକଥା ଛାଡ଼ । ମୋ ଷ୍ଟଡ଼ିରୁମ୍ ଦେଖି ଜାଣିପାରିବ । ମୋ ଷ୍ଟଡ଼ିରୁମ୍‌ରେ ବହିର ଦୁଇଟି ଆଲମୀରା ଅଛି । ମୋର କବ୍‌ବୋର୍ଡ଼ ବି ଅଛି । ଟେବୁଲ୍ ଉପରେ ମୋ ଫାଇଲ ଅଛି । ଡାହାଣପଟେ ଡିକ୍ସିନାରୀ ରଖାହୋଇଛି । ଥାକରେ ଆହୁରି କିଛି ଫାଇଲ୍ । କାନ୍ଥରେ ପେଣ୍ଟିଂ ଟଙ୍ଗା ହୋଇଛି, କୋଣରେ ଗୋଟେ ନ୍ୟୁଡ୍ ବି ଅଛି...

''ଠିକ୍ ଅଛି ଦେଖାଅ ।'' ପୋଲିସ ଶୈତାନୀ ଆଖିରେ କହିଲା ।

ତାଙ୍କୁ ରାଗ ଆସିଲା, କିନ୍ତୁ କିଛି ଚାରା ନଥିଲା । ପୋଲିସ ଷ୍ଟଡ଼ିରୁମ୍‌ରେ ପହଞ୍ଚିଲା ପରେ, ସେ ନିଶ୍ଚିତ ହୋଇ ତାକୁ ଦେଖିବାରେ ଲାଗିଲେ । ''ହଁ ଅଛି ।'' ପୋଲିସ ଟିକିଏ ଚିନ୍ତାକରି ମୁଣ୍ଡକୁ କୁଣ୍ଡେଇ କୁଣ୍ଡେଇ କହିଲା । କିନ୍ତୁ ଏହା ତ ସମସ୍ତଙ୍କ ଷ୍ଟଡ଼ିରୁମ୍‌ରେ ଥାଏ । ବହି, ଫାଇଲ୍, ନ୍ୟୁଡ୍, ପେଣ୍ଟିଂ ଏସବୁ ତ ସମସ୍ତଙ୍କ ଷ୍ଟଡ଼ିରୁମ୍‌ରେ ଥାଏ । ଆଚ୍ଛା କୁହ ତ ଏ ପେଣ୍ଟିଂ କାହାର ? କହିସାରି ପୋଲିସ ପେଣ୍ଟିଂ ପର୍ଯ୍ୟନ୍ତ ଆଗେଇଗଲା ।

ଏହା ମୋର ଏବେ ମନେପଡୁନି... ସେ ଚିଡ଼ିଉଠି ମଜବୁରୀରେ ଜବାବ୍ ଦେଲା ।

''ପେଣ୍ଟରମାନଙ୍କ ବିଷୟରେ ମୁଁ ବହୁତ ଜାଣେ ।'' ପୋଲିସ ନିଜର ଜ୍ଞାନର ଗରିମା ଦେଖାଇବାକୁ ଯାଇ କହଲା, ''ଯେତେବେଳେ ଜୟପୁର ମହାରାଜାଙ୍କ ପ୍ୟାଲେସ୍‌ରୁ ଲକ୍ଷେ ପେଣ୍ଟିଂସ୍ ଚୋରି ହୋଇଥିଲା, ସେଠି ଇନ୍‌ସପେକ୍ଟର ଭାବେ ମୋତେ ପଠାଯାଇଥିଲା । ସେଉଠୁ ବୁଝ । ପୁଣି ଦିଲ୍ଲୀ ମ୍ୟୁଜିୟମ୍‌ରୁ ଯେବେ ପେଣ୍ଟିଂ ଓ ଆର୍ଟପିସ୍ ସବୁ ଚୋରି ହୋଇଥିଲା... ମୋତେ ହିଁ ପୋଷ୍ଟିଂ କରାଯାଇଥିଲା... ଏସବୁ ଜିନିଷ ମୁଁ ଚିହ୍ନିଛି । ଏ ପେଣ୍ଟିଂ ଆପଣଙ୍କ ଷ୍ଟଡ଼ିରୁମ୍‌ରେ ଅଛି କିନ୍ତୁ ଆପଣ ଜାଣନ୍ତିନି ଏ କାହାର ?'' କହିସାରି ପୋଲିସ ମନ୍ଦହସି ତାଙ୍କୁ ଚାହିଁଲା ।

''ଆପଣ ବି ଥଟ୍ଟା କରୁଛନ୍ତି... କହି ସେ ପୋଲିସକୁ ଫୁସଲାଇବାକୁ ଚାହିଁଲେ, କିନ୍ତୁ ତା ହାବଭାବ ଦେଖି ତାଙ୍କ ଅବସ୍ଥା ଖରାପ ହୋଇଗଲା । ଆଉ କୌଣସି ଉପାୟ ନଦେଖି ସେ କହିଲେ, ''ଆଚ୍ଛା ଆସନ୍ତୁ, ଏଇଠକି ଆସନ୍ତୁ, ଏହାଠାରୁ ବଡ଼ ପ୍ରମାଣ କ'ଣ ଦେଇପାରିବି ଯେ ଏ ମୋର ଘର''...

'ପ୍ରମାଣ କ'ଣ ?' ପୋଲିସ ତାଙ୍କ ପଛରୁ ଆସୁଆସୁ କହିଲା ।

ସେ ତା'ପରେ ନିଜ ବେଡ୍‌ରୁମ୍‌ର ଦୁଆର ଖୋଲିଲେ ଏବଂ ଲାଇଟ୍ ଅନ୍‌କଲେ । ପୁଣି ଖୁବ୍ ନିଶ୍ଚିନ୍ତ ଭାବେ ବିଛଣା ଉପରେ ଶୋଇ ଆଖି ବୁଜିଥିବା ନିଜ ପତ୍ନୀଙ୍କୁ ଦେଖାଇ କହିଲେ, 'ଏ ମୋ ସ୍ତ୍ରୀ ।'

'ହଁ, ଅଛନ୍ତି' ପୋଲିସ ନିରିଖେଇ ଦେଖି କହିଲା । କିନ୍ତୁ ଏ ବିଛଣାରେ ଶୋଇଥିବା ଅନ୍ୟଜଣକ କିଏ ?

ତା'ପରେ ସେ ଧୀରେ କହିଲେ, ''ସେ ହେଉଛି ମୁଁ । ବିଶ୍ୱାସ କର, ମୁଁ ।" ଏବଂ ସେ ଲାଇଟ ଅଫ୍ କରିଦେଲେ ।

# କମ୍ରେଡ୍

'ଲାଲ୍‌ହିନ୍ଦ୍ କମ୍ରେଡ୍ !' ଜଣେ ଅନ୍ୟ ଜଣେ କମ୍ରେଡ଼କୁ ହାତମୁଠି ଦେଖାଇ କହିଲା । 'ଲାଲହିନ୍ଦ୍' କହି ସେ ବି ଶୂନ୍ୟରେ ମୁଠି ଦେଖାଇଲା । ମୁଁ ଚମକି ପଡ଼ିଲି । ଆଉ ଏମିତିବି ଲୋକେ କମ୍ରେଡ଼ମାନଙ୍କ ନାଁ ଶୁଣିଲେ ଚମକି ଉଠନ୍ତି । ବାସ୍ତବରେ ଏହା କେତେକାଂଶରେ ସତ୍ୟ ଯେ କମ୍ରେଡ୍‌ମାନଙ୍କର 'ରେଡ୍'ରେ ସରକାର ବି ଦୋହଲିଯାଏ । ଏମାନଙ୍କର 'ରେଡ୍' ବି ଖୁବ୍ ମଜା କଥା- 'ରେଡ୍'ର ପ୍ରଥମ ଚରଣରେ ହରତାଳ, ଦ୍ୱିତୀୟରେ ମାରପିଟ୍, ତୃତୀୟରେ ଅନଶନ, ଚତୁର୍ଥରେ ଜେଲଯାତ୍ରାର ଧମକ୍ ଦେଇଥାନ୍ତି !

ମୁଁ ଏ ସହରକୁ ନୂଆ ନୂଆ ଆସିଥାଏ । ବହୁତ ମୁସ୍କିଲରେ ଏଇ ଗଳିରେ ମୋତେ ଘରଟିଏ ରହିବାକୁ ମିଳିଥିଲା । ତା' ପରଦିନ ଦେଖିଲି ଖଦଡ଼ଧାରୀମାନଙ୍କର

ଏକ ଲମ୍ବା ଲାଇନ୍ ମୁଁ ରହୁଥିବା ଛୋଟ ଗଳିଯାଏ ଲମ୍ବିଆସିଛି । ଅନୁମାନ କଲି ପ୍ରାୟ କଂଗ୍ରେସର କୌଣସି ସଭାର ଆୟୋଜନ ହେଇଛି । ସେଥିପାଇଁ ହୁଏତ ଏତେ ଭିଡ଼ ଜମିଛି ଏଠି । ଏଇଭଳି ପ୍ରାୟ ମାସେକାଳ ବିତିଲା ପରେ ବି ଏଠି କିଛି ବିଶେଷ ସଭାର ଆୟୋଜନ କଥା ଜାଣିପାରିଲିନି । ଥରେ ମୁଁ ସାହସ କରି ଜଣେ କମ୍ରେଡଙ୍କୁ ଅଟକେଇ ପଚାରିଲି- ''ମହାଶୟ, ଆପଣ ଏଠାରେ ସାରାଦିନ କାହିଁକି ଚକ୍କର କାଟନ୍ତି ?" ପ୍ରଥମେ ସେ ଟିକିଏ ଅପ୍ରସନ୍ନ ହେଲେ ଓ ମୁଣ୍ଡରେ ଶୁଖିଲା ବାଳରେ ହାତବୁଲେଇ କହିଲେ- ''କ'ଣ ଆପଣ ଏଠିକୁ ନୂଆକରି ଆସିଚନ୍ତି କି ?''

'ହଁ ଆଜ୍ଞା' ମୁଁ କହିଲି ।

'ତେବେ, ଆପଣ ରହୁଛନ୍ତି କେଉଁଠି ?'

'ସେଇଠି' ମୁଁ ଇସାରାକଲି ।

'ସେଇଠି, ଆପଣଙ୍କ ବସା ପାଖରେ ଆମ ପାର୍ଟିର ପ୍ରଭିନ୍‌ସିଆଲ୍ ଅଫିସ୍ ।'

'କ୍ଷମା କରିବେ... ଆପଣଙ୍କୁ ମୁଁ ଜାଣି ନଥିଲି ।' ମୁଁ କହିଲି 'ଆଜ୍ଞା, ନମସ୍କାର ।'

'ଠିକ୍ ଅଛି ନମସ୍କାର, କିନ୍ତୁ ଆପଣ କରନ୍ତି କ'ଣ ?' ସେ ପଚାରିଲେ ।

'ମୁଁ ଜଣେ ଛାତ୍ର ।'

'ଠିକ୍ ଅଛି, ମୋତେ ସମୟ ହେଲେ ଦେଖା କରିବ, ପାର୍ଟି ଅଫିସକୁ ଆସ... ପାର୍ଟି 'ଲିଟରେଚର୍' କିଛି ପଢ଼ିନେବ ।'

'ଧନ୍ୟବାଦ ।'

'ଆଚ୍ଛା, ଲାଲହିନ୍ଦ୍' କହି ସେ ମୋ ଆଡ଼କୁ ବଦ୍ଧମୁଷ୍ଟି ପ୍ରଦର୍ଶନ କଲେ । ମୁଁ ଡରିଯାଇ ହାତଯୋଡ଼ି ନିଜର ଅହିଂସାତ୍ମକ ପ୍ରବୃତ୍ତିର ପରିଚୟ ଦେଲି ।

ମୋର ଯେଉଁ କମ୍ରେଡ଼ଙ୍କ ସହ ପରିଚୟ ହେଲା, ତାଙ୍କ ନାମ ଥିଲା କମ୍ରେଡ ସତ୍ୟପାଳ । ସେ ବି ସେଇ ରାଜ୍ୟସ୍ତରୀୟ କାର୍ଯ୍ୟାଳୟରେ ରହୁଥିଲେ । କୌଣସି ଏକ 'ଲିମିଟେଡ୍ କମ୍ପାନୀ'ର ଏଜେଣ୍ଟ ଥିଲେ । କାମଥିଲା ତାଙ୍କର ବୁଲାବୁଲି କରିବା । ସେଇଥିପାଇଁ ସମାଜସେବାର କାମ ଆପଣେଇ ନେବାରେ କିଛି ଅସୁବିଧା ନଥିଲା । ତାଙ୍କ ବାପା ଯଦିଚ ସେଇ ସହରରେ ରହୁଥିଲେ ଓ ପ୍ରାୟ କୋର୍ଟରେ ଚପରାଶି କାମ କରୁଥିଲେ । ସେଥିପାଇଁ ସେ ତାଙ୍କ ବାପାଙ୍କ ପାଖରେ ନରହି, ଏଠାରେ ରହୁଥିଲେ । ବାପାଙ୍କ ସହ ରହିବାକୁ ହୁଏତ ତାଙ୍କୁ ଲାଜ ଲାଗୁଥିଲା ।

ସକାଳ ସାତଟା ବାଜି ସାରିଥିଲା, କାନ୍ଥବାଡ଼ରେ ସୂର୍ଯ୍ୟଙ୍କର ପ୍ରଥମ କିରଣର ଛଟା ଖେଳି ଯାଇଥିଲା । କ୍ଷୀର ଆଣିବା ପାଇଁ ଲୋକମାନେ ନିଜ ନିଜର ନୋଟା ନେଇ ବାହାରକୁ ଯାଇ ସାରିଥିଲେ । ଗଙ୍ଗାସ୍ନାନ କରିବା ପାଇଁ ଯାତ୍ରୀମାନେ ଯୋଦ୍ଧାମାନଙ୍କ ଭଳି ଲାଇନରେ ଛିଡ଼ାହେଇ ଗଙ୍ଗାମାଆଙ୍କର ଜୟଗାନ କରି ଚାଲିଥିଲେ । 'ସେଣ୍ଟ୍ରାଲ ଅର୍ଡ଼ିନାନନ୍ସ ଡିପୋ'ର

ଖଚରଗାଡ଼ି ପୋଲ ଉପରେ ମଜୁରିଆମାନଙ୍କୁ ନେଇଯିବା ପାଇଁ ଅପେକ୍ଷା କରିଥିଲା । ମୋଟା ଓ ପତଳା ଲୋକମାନେ ହାତରେ ଟିଫିନ୍ କ୍ୟାରିୟର ଧରି ଜୀବନ ପ୍ରମାଣେ ଜୀବିକା ପାଇଁ ପୋଲ ଆଡ଼କୁ ଖେପି ଚାଲିଥିଲେ । ଧର୍ମଶାଳାରେ ଗହଳି ଆରମ୍ଭ ହେଇସାରିଥିଲା । ଗଳିରେ ମିଠେଇବାଲା କୋଇଲା ଆଞ୍ଚରେ ନିଆଁ ଲଗେଇ କଡ଼େଇ ବସେଇଦେଇ ଡାଲ୍‌ଡା ଡିବା ଓଲଟେଇ ଧରିଥିଲା । ପାଖରେ ବସିଥିବା ପେଟୁଆ ଚାକର ବାସି ବାସନରୁ ମଲାମାଛି କାଢ଼ି ବାହାରକୁ ଫିଙ୍ଗୁଥିଲା । କିନ୍ତୁ ଆମ କମ୍ରେଡ଼ ବାରଣ୍ଡାର ଏକ କୋଣରେ ଚାଦର ଢାଙ୍କି ଜାକିଜୁକି ହେଇ ପାହାନ୍ତିଆ ନିଦ ଭୋଗି ଚାଲିଥିଲେ । ଧୀରେ ଧୀରେ ସକାଳୁଆ ଖବରକାଗଜବାଲାଙ୍କର ଗହଳି ସରିଲା । ଆଉ ରାତିସାରା ବନ୍ଦଥିବା ଦୋକାନସବୁର ଦୁଆର ଖଡ଼୍‌ଖଡ଼୍ ହେଇ ଖୋଲିବା ଆରମ୍ଭ ହେବା ମାତ୍ରେ ସେ କଡ଼ ଲେଉଟା ଜଣାଇଦେଲେ ଯେ ବର୍ତ୍ତମାନ ପର୍ଯ୍ୟନ୍ତ ସେ ଜୀବିତ ଅଛନ୍ତି । ଥକି ଯାଇଥିବା ଘୋଡ଼ାଟେ ଭଳି ସେ ତିନି ଚାରିଥର ଅଳସ ଭାଙ୍ଗି ଚାଦର ବେକ ପର୍ଯ୍ୟନ୍ତ ଖସେଇଦେଇ ମୁହଁ ଦେଖେଇଲେ । ଲମ୍ଵା ଲମ୍ଵା ରୁକ୍ଷ କେଶ ଦେଖାଗଲା କେବଳ, ଯେମିତି କଲିକତାରୁ ଆସିଥିବା କୌଣସି ବ୍ୟକ୍ତି ନିଜ ଥଳି ଭିତରୁ ନଡ଼ିଆ କାଢ଼ିଛି ଆଉ ସେ ସେଉଠୁ ଡାକ୍‌ଲେ- 'ଇଲାହୀ ।'

'ଆଜ୍ଞା', ଭିତରୁ ଇଲାହୀ ଜବାବ୍ ଦେଲା ।

'ଟି' ଟିକିଏ ଅଳସେଇ ସେ କହିଲେ ।

'ଦୁଧ ନାହିଁ ।'

''କ'ଣ କ୍ଷୀରବାଲା ଏଯାଏ ଆସିନି, ତାକୁ ଆଜିଠୁ ମନା କରିଦିଅ, ଏତେ ଡେରିରେ କ୍ଷୀର ଦର୍କାର ନାହିଁ, କାଲିଠାରୁ କ୍ଷୀର ନଦେଉ ।''

'ସେ ତ କାଲିଠାରୁ ଦେବା ବନ୍ଦ କରି ଦେଇଚି... ପନ୍ଦର ଦିନର ହିସାବ କରି ଦେଇଦେବାକୁ କହୁଥିଲା'- ଇଲାହୀ ଭିତରୁ କହିଲା ।

''ବହୁତ କଥା କହୁଚୁ, ଏକ ତାରିଖରେ ଦେଢ଼ଟଙ୍କା ଦେଇଥିଲି, କାଲି ତା'ଠାରୁ ହିସାବ କରି ଯା'ହେବ ରଖିନେବ । ଆଉ କାଲିଠୁ କ୍ଷୀର ବନ୍ଦ ।''

ହାତମୁହଁ ଧୋଇବା ପାଇଁ ଇଲାହୀ ଗର୍ ଗର୍ ହେଇ କହି କହି ତଳକୁ ଓହ୍ଲେଇଗଲା- ''ଆଜି ସତେଇଶ ତାରିଖ ହେଲାଣି । ଏକ ତାରିଖରେ ଦେଢ଼ ଟଙ୍କା ଦେଇଥିଲ । ପୁଣି ହିସାବ କରି ତୁମେ ରଖିନେବ !''

ପାଇଖାନା ଯିବାକୁ ସମୟ କାହିଁ, ଖଦଡ଼ ଜାମା ପିନ୍ଧି, ହାତରେ ପୁରୁଣା ଖବରକାଗଜ ଧରି ଏପଟ ସେପଟ ହେଇ କମ୍ରେଡ଼ ତଳକୁ ଯାଇ ଧର୍ମଶାଳା ପାଖରେ ଛିଡ଼ା ହେଇଥିବା ରିକ୍ସାବାଲାଙ୍କ ପାଖରେ ପହଞ୍ଚି ଜଣକୁ କହିଲେ- ''ଇତବାରୀ ! ସେଦିନ ଯେଉଁ ତୋ ରିକ୍‌ସା ଚକା 'ବ୍ରଷ୍ଟ' କରିଥିଲା, ତାକୁ ଠିକ୍ କରିବା ପାଇଁ ପଇସା ମାଲିକ ଦେଇଥିଲେ ତ ?

ସେ ଜବାବ୍ ନଦେବା ଆଗରୁ କମ୍ରେଡ଼ ଅନ୍ୟଜଣକୁ କହିଲେ- ''କ'ଣ ମଙ୍ଗୁ ?

ସେ ବାବୁଙ୍କଠାରୁ ଛକରୁ ଏପର୍ଯ୍ୟନ୍ତ ଟଙ୍କାଟେ ଆଦାୟ କଲୁ କି ନାହିଁ, ନା ସେ ମାତ୍ର ଚାରଣିଟେ ଦେଲେ ?''

'ଆରେ ଭାଇ, ଶେଷରେ ଚାରିଣିଟେ ଦେଲେ'... ଖୁବ୍ ବଦ୍‌ମାସ...

'ଏଇ ଅତ୍ୟାଚାରୀମାନଙ୍କର ଶୋଷଣକୁ ଖତମ୍ କରିବା ପାଇଁ ତୁମମାନଙ୍କୁ ସଂଗଠିତ ହେବାକୁ ହେବ... ନିଜ ହକ୍ ନିମନ୍ତେ ଲଢ଼ିବାକୁ ହେବ, ତୁମେ ନିଜର ଶକ୍ତି କ'ଣ ଜାଣିନାହଁ... । ଏମାନଙ୍କ ସହ ଲଢ଼ିବା ପାଇଁ... ନିଜର ପରିଶ୍ରମର ହକ୍ ଆଦାୟ କରିବାକୁ... ଦାରିଦ୍ର୍ୟର କଷାଘାତରେ ସଢୁଥିବା ସ୍ତ୍ରୀ ଛୁଆଙ୍କୁ, ସେମାନଙ୍କର ଭୋକିଲା ଆତ୍ମାକୁ ଶାନ୍ତ କରିବା ନିମନ୍ତେ, ପେଟଭର୍ତ୍ତି ଖାଇବାକୁ ପାଇବା ନିମନ୍ତେ ତୁମମାନଙ୍କୁ ସଂଗ୍ରାମ କରିବାକୁ ହେବ... ସମସ୍ତଙ୍କୁ ଏକାସାଥିରେ ଛିଡ଼ା ହେବାକୁ ହେବ... ସମସ୍ତଙ୍କର ସ୍ୱର ହେବ ଏକ... ଦାବି ହେବ ଏକ.... । ନିଜର ଶକ୍ତିକୁ ଚିହ୍ନ ! କାଲି ହଁ ଏକ ରିକ୍ସା ମଜଦୁର ୟୁନିୟନ ବନାଅ । ପହରିଦିନରୁ ସାରା ସହରରେ ହରତାଳ କରିଦିଅ । ମୁଁ ଏବଂ ମୋ ସାଥୀମାନେ ତୁସମହ ଅଛନ୍ତି । ନିଜ ଦାବିର ପ୍ରଚାରପତ୍ର ଛାପ, ସମସ୍ତଙ୍କଠାରୁ ଚାରିଅଣା କରି ଆଦାୟକର, ଏସବୁ ତୁମମାନଙ୍କର କାମରେ ଆସିବ । କିନ୍ତୁ ଖୁବ୍ ଜଲ୍‌ଦି କର । ଠିକ୍‌ଅଛି, ତେବେ ମୁଁ ଚାଲିଲି । ବହୁତ କାମ ଅଛି । ବିଜୁଳିଘରର ଶ୍ରମିକମାନେ ମୋତେ ଅପେକ୍ଷା କରିଥିବେ । ତୁମେ ଆଜି ଚାନ୍ଦା ଏକାଠି କଲାପରେ ସାମ୍ନାରେ ଅଫିସ୍‌ରେ ମୋତେ ସଂଜକୁ ଭେଟ । ତେବେ ସାଥିମାନେ, ମୁଁ ଚାଲିଲି, ଲାଲ ହିନ୍ଦ୍ । ଏକଥା କହିସାରି ଖୁବ୍ ଜୋର୍‌ରେ କମ୍ରେଡ୍ ସତ୍ୟପାଲ ନିଜ ଘରକୁ ଆସି ପଡ଼ିଥିବା ଚାଦର ଚଉତିବାକୁ ଲାଗିଲେ ।

ପ୍ରାୟ ଦଶଟା ବେଳକୁ କମ୍ରେଡ୍ ନିଜର ବିଜୁଳିଘରର କାଞ୍ଚନିକ କାମ ଶେଷ କରିବାକୁ, ଖଦଡ଼ର ପାଇଜାମା, କୁର୍ତ୍ତା ପିନ୍ଧି, ହ୍ୟାଣ୍ଡବ୍ୟାଗ୍ ଧରି, ବାଟା ଚପଲର ଫଡ୍ ଫଡ୍ ଆୱାଜ୍‌ରେ ଉପରୁ ତଳକୁ ଆସି ସହରର ବଛା ବଛା ସଡ଼କ, ପାଚେରୀରେ ଲେଖା ଔଷଧ ବିଜ୍ଞାପନ, ପେନ୍‌ବାମ୍ ଓ ସିନେମା ବିଜ୍ଞାପନ ପଢ଼ି, ଡାକବଙ୍ଗଳା ବସ୍ତି ବାଟଦେଇ ସାଢ଼େ ଦଶଟା, ଗୋଟାଏ ଓ ତିନିଟାବେଳ ଓ ସଞ୍ଜବେଳ ରିଜେଣ୍ଟ ଥିଏଟରରେ ବିତାଇ ଥକିଯାଇ ଫୁଟ୍‌ପାଥ୍‌ରେ ଚାଲି ଚାଲି 'ୱାଟର୍ ୱାର୍କ୍‌ସ'ର ଫାଟକ ପାଖରେ ପହଞ୍ଚିଲେ । ଚପରାଶି ଅଟକାଇ ପଚାରିଲା କ'ଣ ଭାଇ...''

''କୁଆଡ଼େ ଯାଉଚ ବାବା ! ଭିତରକୁ ଯିବା ମନା ।' ଫାଟକ ଆଖରେ ଛିଡ଼ା ହୋଥିବା ଚପରାଶି ଶୁଖିଲା ଗଳାରେ କହିଲା ।

ବୁଲି ବୁଲି ଥକିପଡ଼ିଥିବା କମ୍ରେଡ୍ ବିଚରା ସାମ୍ନା ବଗିଚାକୁ ଯାଇ ଲନ୍‌ରେ ବସି 'ଭାରତରେ ଲାଲ୍ କ୍ରାନ୍ତି'ର ରୂପରେଖା ତିଆରି କରୁ କରୁ ହ୍ୟାଣ୍ଡବ୍ୟାଗ୍‌କୁ ତକିଆ କରି ଶୋଇଗଲେ । ସନ୍ଧ୍ୟାବେଳକୁ ଯେତେବେଳେ ଅଫିସ୍ ଫେରିଲେ ମଙ୍ଗୁ ରିକ୍ସାବାଲାକୁ ବସିଥିବାର ଦେଖି ହଠାତ୍ କହିଲେ- କ'ଣ କରିବ, ୱାଟ୍‌ର ୱାର୍କ୍‌ସରେ ଖୁବ୍ ଅନ୍ୟାୟ ଚାଲିଚି । ସମସ୍ତେ

ମୋ ପଛରେ ପଡ଼ିଗଲେ, କରିବି କ'ଣ ? ଏମିତି ଧରିଲେ ଯେ ଛାଡ଼ିଲେ ହିଁ ନାହିଁ । କ'ଣ ମୋ ଆସିବା ଡେରିହେଲା କି ?''

'ନାଁ ଭାଇ, ଆଜି ତୁମ ଉତ୍ସାହଭରା ଭାଷଣ ଆମ ମନରେ ନୂତନ ପ୍ରାଣ ସଂଚାର କରଚି । ଆମେ ଛ'ଟଙ୍କା ଆଦାୟ କରିଛୁଁ, ଏହାକୁ ରଖି କାଲିଠାରୁ ଆପଣ ଆମ କାମ ଆରମ୍ଭ କରିଦିଅନ୍ତୁ । ଆଉ କାଲି ଆମେ ଆହୁରି କିଛି ଆଦାୟ କରି ଜମାକରିବୁ ।''

''ଆଚ୍ଛା, ଠିକ୍ ଅଛି ଆଣ । ପନ୍ଦରଦିନରେ ଦେଖ । କ'ଣ ସବୁ ପରିବର୍ତ୍ତନ ହେଉଚି... ଆଜି ସତେଇଶ ତାରିଖ । ଏଇ ପୁଞ୍ଜିବାଦୀ ସରକାର ପନ୍ଦର ତାରିଖରେ ସ୍ୱାଧୀନତାର ବାର୍ଷିକ ଉତ୍ସବ ପାଳନ କରୁଚି, ଯେଉଁଠିକି ଆମେ ଗରିବ ମୁଲିଆ ଆମର ମୃତ୍ୟୁର ବାର୍ଷିକୋତ୍ସବ ପାଳନ କରୁଚନ୍ତି । ମୁଁ କାଲି ପୁଣି ତୁମମାନଙ୍କୁ ଭେଟିବି । ହଁ, ମୋତେ ଏବେ ପ୍ରେସ୍‌କୁ ଯିବାକୁ ପଡ଼ିବ, କେତେକ 'ବିଶେଷ ଖବର' ବାହାର କରିବାକୁ ହେବ । ତେବେ ସବୁ ଠିକ୍ 'ଲାଲ୍ ଭାରତ' ।

ଦଉଡ଼ି ଦଉଡ଼ି ଶ୍ୟାମଲାଲ୍‌ର ପାନ ଦୋକାନରେ ପହଞ୍ଚିଲେ । ଗର୍ବର ସହ କହିଲେ- 'ହଁ ଶ୍ୟାମଲାଲବାବୁ, ତୁମର କେତେ ଟଙ୍କା ବାକି ଅଛି ।''

'ଚାରିଟଙ୍କା ତିନିଅଣା ।'

'ମୋର ତ ହିସାବ ମନେନାହିଁ, ତୁମ କଥାରେ ବିଶ୍ୱାସ ଅଛି, ନିଅ ଚାରି ଟଙ୍କା... ତିନିଅଣା ପୁଣି କେବେ ଦେବି... ଆରେ କାଲି ଦେଇଦେବି ।

'ଖୁବ୍ ଭଲ କଥା ବାବୁ'... କହି ସେ ଚାରିଟଙ୍କା ବାକ୍ସରେ ପକେଇଦେଲା ।

କମ୍ରେଡ଼ ରିକ୍ସାରେ ବସି ପ୍ରେସ୍ ପହଞ୍ଚିଲେ, ରିକ୍ସାବାଲାକୁ ଟଙ୍କାକିଆ ନୋଟ୍‌ଟେ ବାହାର୍ କରିଦେଲେ- କହିଲେ- ଦିଅ, ଏଗାର ଅଣା ଫେରାଅ ।

'ବାବୁ ଏଠାକୁ ଆସିବା ପାଇଁ ଆଠଅଣା ହେଲା ।'

'ପ୍ରେସ ପହଞ୍ଚିବାକୁ ମାତ୍ର ଦୁଇ ମାଇଲ୍, ଦିଅ ଏଗାର ଅଣା ଫେରାଅ, ମୋର କ'ଣ ଟଙ୍କାଶାଳ ଅଛି କି ? ପଇସା ତିଆରି କରି ତତେ ଦେଉଥିବି ।

'ମୋ ପାଉଣା ଆଠଅଣା ହେଉଚି ବାବୁ, ବେଶୀ କିଛି ମାଗିନି ।'

'ଠିକ୍ ଅଛି, ଦେ' ଦଶଅଣା ଫେରାଅ ।

'ଖୁବ୍ ଚାଲାକିରେ ବାବୁ ଗରିବର ପେଟପାଟଣାରୁ କାଟୁଚ' ରିକ୍ସାବାଲା ପଇସା ଫେରାଇ କହିଲା ।

'ଗରିବ ହେବାରେ ବି ମଜା ଅଛିରେ !' ପଇସା ଗଣି ଗଣି କମ୍ରେଡ଼ ପ୍ରେସ୍ ଭିତରେ ପଶିଲେ । ଛଅ ଟଙ୍କାରୁ ଆଉ ଟଙ୍କାଏ ଦଶଅଣା ବଳିଛି ।

ଭିତରେ ପହଞ୍ଚି ଖୁବ୍ ଶିଷ୍ଟାଚାରର ସହ ସମ୍ପାଦକଙ୍କୁ କହିଲେ, 'ଗୋଟେ ବିଶେଷଖବର ଛପେଇବାରେ ଅଛି ।'

'ଆଉ ଜାଗା ତ ଫାଙ୍କା ନାହିଁ, କିନ୍ତୁ ସମାଚାର କ'ଣ ?' ସଂପାଦକ କହିଲେ ।

'କମ୍ରେଡ୍ ସତ୍ୟପାଳଙ୍କର ଏକ ଉଲ୍ଲେଖନୀୟ ସମାଚାର ।'

'କ୍ଷମା କରିବେ, ଚତୁର୍ଥ ପୃଷ୍ଠାରେ ବିଜ୍ଞାପନ ସ୍ତମ୍ଭ ଫାଙ୍କାଅଛି, ସେଇଥିରେ ବିଜ୍ଞାପନ ଦରରେ ଛପା ହେଇପାରିବ ।'

'ଦୟାକରି ଏହାକୁ ଛାପିଦେଲେ ଖୁବ୍ ଭଲ ହେବ ।'

'ମୁଁ ଅସମର୍ଥ ବନ୍ଧୁ । ଦି'ଟଙ୍କା ଲାଗିବ, ବିଜ୍ଞାପନ ଦରରେ ଛପାହେବ ।'

'ଠିକ୍ ଅଛି, ଦେଢ଼ଟଙ୍କା ରଖନ୍ତୁ, ଧନ୍ୟବାଦ ।'

କିଛି ସମୟ ପରେ କମ୍ରେଡ୍ ନିଜ ଜାମା ପକେଟ୍‌ରେ ହାତ ପୂରେଇଲେ, ବଳିଥିବା ଦୁଇଅଣାରୁ ଚାରିପଟେ ହାତପୂରେଇ ପ୍ରସନ୍ନ ମୁଦ୍ରାରେ ଫେରିଆସିଲେ । ପରଦିନ ସ୍ଥାନୀୟ ଖବର କାଗଜରେ ବାହାରିଥିଲା, ''କମ୍ରେଡ୍ ସତ୍ୟପାଳଙ୍କର ଉଲ୍ଲେଖନୀୟ କାର୍ଯ୍ୟ । ରିକ୍ସା ମଜଦୁର୍ ୟୁନିଅନ୍‌ର ଗଠନ'', ଆଉ କଛି ସାମାନ୍ୟ ବିବରଣୀ । ଆଉ ଆଜି ସକାଳେ କମ୍ରେଡ୍ ପୁରୁଣା ଖବରକାଗଜ ଜାଗାରେ ନୂଆ ଖବରକାଗଜ ଧରି ଚତୁର୍ଥ ପୃଷ୍ଠାକୁ ଉପରକୁ ଧରି ରିକ୍ସାବାଲାଙ୍କ ମଝିରେ ଆସ୍ଥାନ ଜମେଇଥିଲେ ।

ଧୀରେ ଧୀରେ କାମ ବଢ଼ି ଚାଲିଥିଲା । ଦିନ ବି ବିତିଯାଇଥିଲା ଏମିତି ଏମିତି । ସେଦିନ ଥିଲା ଷୋହଳ ଅଗଷ୍ଟ । ବିଚରା କମ୍ରେଡ୍ ପନ୍ଦର ଅଗଷ୍ଟ ଉତ୍ସବ ନିମନ୍ତେ ଜାଲ୍ ରସିଦ୍ କାଟି ଚାନ୍ଦା ଆଦାୟ କରିବା ଅପରାଧରେ ଦୁଇଜଣ ସିପାହୀମାନଙ୍କ ସହ ଯୁକ୍ତିତର୍କ କରି ଧରାହେଇ ଯାଉଥିବା ବେଳେ ୟୁନିଅନ୍‌ର ଜଣେ ରିକ୍ସାବାଲା ଦେଖି ଆଶ୍ଚର୍ଯ୍ୟର ସହ ପଚାରିଲା- ''କମ୍ରେଡ୍ ଏ କ'ଣ ?''

''ଆରେ ଭାଇ, ଗରିବଙ୍କ ପାଇଁ ଯିଏ କହିବ ତା' ଅବସ୍ଥା ଏଇଆ ହେବ । ମୁଁ ଗରିବଙ୍କ ପାଇଁ କହିଲି, ତେଣୁ ଏ ଦଣ୍ଡ ପାଇଲି । କିନ୍ତୁ ଚିନ୍ତା କରନି, ଗରିବଙ୍କୁ ମିଳୁଥିବା ଦାନା ଅପେକ୍ଷା ମୋ ଜୀବନ ଶସ୍ତା ନିଶ୍ଚୟ । 'ଲାଲ୍‌ହିନ୍ଦ୍ ଜିନ୍ଦାବାଦ୍ ।'

ଆଉ ସତକଥା ସବୁ କମ୍ରେଡ୍‌ଙ୍କର ଏଇ ମନଗଢ଼ା ସୁନ୍ଦର ସଫେଇ ଭିତରେ ହିଁ ଲୁଚିଗଲା, ସେ ପୁଣି କହିଲେ, 'ଲାଲହିନ୍ଦ୍ ଜିନ୍ଦାବାଦ୍ ।'

ଦୁଇ ତିନିଜଣ ରିକ୍ସାବାଲା ଚିତ୍କାର କରି ଉଠିଲେ- 'ଲାଲ୍‌ହିନ୍ଦ୍ ଜିନ୍ଦାବାଦ୍ !' କମ୍ରେଡ୍ ସତ୍ୟପାଳ ଜିନ୍ଦାବାଦ୍ ! ଜିନ୍ଦାବାଦ୍ !

# ପ୍ରେମିକା

ସହରର ଏକ ପୁରୁଣା ବସ୍ତିରେ ଖୁବ୍ ସଂକୀର୍ଣ୍ଣ ଓ ଦୁର୍ଗନ୍ଧମୟ ଗଳିଟିଏ ଥିଲା । ସେଇ ଗଳିରେ ଥିଲା ବେଶ୍ ପୁରୁଣା ଘରଟିଏ । ସେଥିରେ ମାଧ୍ୟମିକ ସ୍କୁଲର ଜଣେ ଶିକ୍ଷକ ରହୁଥିଲେ । ତାଙ୍କର ଗୋଟେ ଢିଲା ନୀଳ ପ୍ୟାଣ୍ଟ ଓ ଉଲ୍‌ର କୋଟ୍‌ଟିଏ ଥିଲା । ସ୍ଥାନେ ସ୍ଥାନେ ଏହା ସୂତାରେ ସିଲେଇ ହୋଇଥିଲା । ସେ ମୁଣ୍ଡରେ ଗୋଲ ଟୋପିଟିଏ ପିନ୍ଧୁଥିଲେ ଯା' ଭିତରେ ଖବର କାଗଜଟିଏ ଅସ୍ତରଭଳି ଲାଖି ରହିଥିଲା । ଆଖିରେ ସେ ପିନ୍ଧୁଥିଲେ ସମୀପ ଓ ଦୂରଦୃଷ୍ଟି ସମ୍ପନ୍ନ ଗୋଲ ଚଷମାଟିଏ ଯାହାର ଗୋଟିଏ ପଟ ଫ୍ରେମ୍ ଅଧା ବଙ୍କା ଥିଲା । ରସ ନିଗିଡ଼ା ଆମ୍ବ ଖଣ୍ଡେ ଭଳି ତାଙ୍କର ନିରସିଆ ସ୍ତ୍ରୀଟିଏ ଥିଲା । ସୌଭାଗ୍ୟବଶତଃ ସନ୍ତାନସୁଖ ମଧ୍ୟ ତାଙ୍କୁ ମିଳିଥିଲା । ପାଞ୍ଚ ପୁଅ ଓ ତିନି ଝିଅ ଥିଲେ ।

ବିପଦ ସମୟରେ ରାମାୟଣ ହିଁ ଥିଲା ତାଙ୍କର ଏକମାତ୍ର ସାଥୀ । ଆଧୁନିକ ଯାନ ରୂପେ ଘରେ ସାଇକେଲ୍‌ଟି ଥିଲା ଯାତାୟତର ମାଧ୍ୟମ । ଆବଶ୍ୟକ ମୁତାବକ ସମସ୍ତଙ୍କର ନୂଆ ପୁରୁଣା ଯୋତାହଳେ ଦି'ହଳ ବି ଥିଲା । ଶିକ୍ଷକ ମହାଶୟ ସଉକରେ ଦିନକୁ ଖାଉଥିଲେ ଦୁ ବଟୁଆ ପାନ ।

ତାଙ୍କର ବଡ଼ପୁଅ କେତେବର୍ଷ ହେଲା ଦଶମ ପାଶ୍ କର ଯାଡ଼େ ସାଡ଼େ ଘୂରି ବୁଲୁଥିଲା । ତିନି ଝିଅଙ୍କ ଭିତରୁ ଦି'ଜଣ ଥିଲେ ଛୋଟ । ବଡ଼ ଝିଅ କମଳା ଦଶମରେ ପଢୁଥିଲା । ଷୋହଳ ବର୍ଷର ତରୁଣୀ କମଳା ବାସନା ତେଲ ଲଗାଇ ମୁଣ୍ଡ ବାନ୍ଧେ । ପ୍ରତିଦିନ ମୁଣ୍ଡଧୋଇ ରିବନ୍ ବାନ୍ଧୁଥିଲା ଏବଂ ବି.ଏ. ପଢୁଥିବା ଏକ ଯୁବକକୁ ପ୍ରେମ କରୁଥିଲା । ଏ ପ୍ରେମ ସଂପର୍କ ଯଦିଚ ଚିଠିପତ୍ରରେ ହିଁ ଚାଲିଥିଲା, କିନ୍ତୁ ମଝିରେ ମଝିରେ ଦେଖାସାକ୍ଷାତ, ସମବେଦନାଦି ବ୍ୟକ୍ତ କରିବାର ସାହାଯ୍ୟ ଲୋଡ଼ାଯାଉଥିଲା । ସେ ଏହା ମଧ୍ୟ ବେଶ୍ ଭଲଭାବେ ଜାଣିଥିଲେ ଯେ, 'ସମାଜ' ନାମକ ଏକ ବସ୍ତୁ ଅଛି ଯାହା ପ୍ରେମିକ ପ୍ରେମିକାଙ୍କ ମଝିରେ ପାହାଡ଼ଭଳି ଛିଡ଼ା ହୋଇଯାଏ ଏବଂ ସେମାନଙ୍କର ମିଳାମିଶା ମଧ୍ୟରେ ପ୍ରତିବନ୍ଧକ ସାଜେ । ପ୍ରେମିକା ବିରହ ନିଆଁରେ ଜଳିପୋଡ଼ି ନା ଅଙ୍ଗାର ହୁଏ ନା ପାଉଁଶ । କେବଳ ଜଣେ ଅନ୍ୟଜଣକୁ ମନେ ପକାଇବାକୁ ହିଁ ଜୀଇଁଥାଆନ୍ତି । ପୁଣି ସେମାନଙ୍କ ପ୍ରେମ କାହାଣୀ ଦୁନିଆଁରେ ଲୈଲା-ମଜନୁ ଭଳି ପ୍ରସିଦ୍ଧି ପାଇଯାଏ । ଅଥବା ପୁଣି ନାଗିନ୍ ଫିଲ୍ମ ଭଳି ପ୍ରେମିକ-ପ୍ରେମିକା ଦି'ଜଣ ପ୍ରାଣ ବିସର୍ଜନ କରି ଇହଲୋକରେ ଏକତ୍ର ହୁଅନ୍ତି । ସେମାନଙ୍କର ମିଳନ ଅମର ହୁଏ ଯେମିତି ବୈଜୁ-ବାବରାଙ୍କର ହୋଇଥିଲା ।

ତାଙ୍କ ଘରକୁ ପୁଅଟିଏ ଯା'ଆସ କରୁଥିଲା, ସେ ଥିଲା ତା'ର ପ୍ରେମିକର ସାଙ୍ଗ । ସେହି ପ୍ରେମିକ-ପ୍ରେମିକା ଦି'ଜଣ ସେଇ ପୁଅଟିଠାରୁ ନିଜର ପ୍ରେମ-ରହସ୍ୟ ଲୁକ୍କାୟିତ କରି ରଖି ଥିଲେ । ଦିନେ କେଉଁଠୁ ଏକଥା ସେ ଜାଣିପାରିଲା । ସେ ଝିଅଟିର ବଡ଼ଭାଇକୁ ଜଣାଇଦେଲା ଯେ କମଳା ବୀରେନ୍ଦ୍ରକୁ ପ୍ରେମକରେ ଏବଂ ସେମାନେ ଜଣେ ଅନ୍ୟ ଜଣକୁ ପ୍ରେମପତ୍ର ଲେଖନ୍ତି । ଲୁଚାଇ ଛପାଇ ଦେଖାସାକ୍ଷାତ ବି କରନ୍ତି ।

କମଳାର ବଡ଼ଭାଇ କମଳାକୁ ଡାକି ଖୁବ୍ ତାଗିଦ୍ କଲେ ଏବଂ କହିଲେ, 'ରତନ କାଲି ସନ୍ଧ୍ୟାରେ ଆସିଥିଲା ଏବଂ କହିଲା ଯେ ତୁ କୁଆଡ଼େ ଲୁଚେଇ ଛପେଇ ବୀରେନ୍ଦ୍ରକୁ ଚିଠି ଲେଖୁଛୁ ।' ଏହା ଶୁଣି କମଳା ଆଖିରେ ଲୁହ ଭରିଗଲା । କାନ୍ଦି କାନ୍ଦି ସେ ଭାଇଙ୍କୁ କହିଲା ଏସବୁ ମିଛକଥା । କିନ୍ତୁ ତା' ମନ ବହୁତ ଖରାପ ହେଲା ଏବଂ ପରେ ଜାଣିଲା ଯେ କ୍ରୁର ସମାଜ ନାମକ ବସ୍ତୁଟି ହେଉଛନ୍ତି ତା' ଭାଇ । ସେ ବୀରେନ୍ଦ୍ରର ପୁରୁଣା ଚିଠିଗୁଡ଼ିକୁ ଛାତିରେ ଜାକି କାନ୍ଦିବାରେ ଲାଗିଲା । ଅଧରାତି ବେଳକୁ ଯେତେବେଳେ ଘରେ ସମସ୍ତେ ଶୋଇପଡ଼ିଲେ ସେ ନିଜ ଭାଇଙ୍କୁ ଚିଠିଟିଏ ଲେଖିଲା-

ସମ୍ମାନନୀୟ ଭାଇ,

ଏଡ଼େବଡ଼ କଳଙ୍କର ଟୀକା ମୋ ମୁଣ୍ଡରେ ଲଗାଇ ମୁଁ ବଞ୍ଚିବି କେମିତି ? ହୁଏତ ଧରଣୀ ଫାଟି ଯାଇଥାଆନ୍ତା ଓ ମୁଁ ତା' ଭିତରେ ପଶିଯାଇଥାନ୍ତି, ନହେଲେ ବୁଡ଼ି ମରିଥାନ୍ତି । ମୋ ପାଇଁ ସାରା ପରିବାର ବଦନାମ୍ ହେବ । ମୁଁ ଜନ୍ମ କାହିଁକି ହେଲି, ଯେଉଁଥିପାଇଁ ଆଜି ଆପଣଙ୍କୁ ଏସବୁ ଶୁଣିବାକୁ ପଡ଼ିଲା । ମୋତେ ଆପଣମାନେ ଏତେ ସ୍ନେହ କାହିଁକି ଦେଲେ ? ମୁଁ ଏସବୁର ଯୋଗ୍ୟ ନୁହଁ । ମୋ ପାଇଁ ବାପାଙ୍କ ନାମରେ ବି କଳଙ୍କ ଲାଗିଲା ଏବଂ ଲାଜରେ ଆପଣଙ୍କୁ ବି ମୁଣ୍ଡ ନୁଆଇଁବାକୁ ହେଲା । ଏସବୁ ମୁଁ ନିଜ ଆଖିରେ ଆଉ ଦେଖିପାରିବିନି । ମୁଁ ଆପଣଙ୍କର ଭଉଣୀ, କିନ୍ତୁ ଜଣେ ନାରୀ ବି । ନାରୀର ଜୀବନ ଘର ପାଇଁ ଏକ ବୋଝ ଭଳି ହୋଇଥାଏ । ମୁଁ ମଧ୍ୟ ଗୋଟେ ବୋଝ ହେଇଯାଇଛି । କିନ୍ତୁ ଭାଇ ମୁଁ ପ୍ରତିଜ୍ଞା କରି କହୁଛି ବୀରେନ୍ଦ୍ର କିଏ ମୁଁ ଜାଣିନି । ମୁଁ ପ୍ରଥମ ଥର ଆପଣଙ୍କ ପାଖରୁ ଏ ନାଁ ଶୁଣିଲି । ଏସବୁ ସେଇ ରତନର ମନଗଢ଼ା କାହାଣୀ । ସେ ନିଜେ ମୋ ସହ ବିଭିନ୍ନ ପ୍ରକାର ଏଣୁତେଣୁ କଥା କହେ । ମୁଁ ଏହି ପବିତ୍ର ଲେଖନଦ୍ୱାରା ସେସବୁ କଥା ତୁମକୁ ଲେଖିପାରିବିନି । ସ୍କୁଲ ଯିବାବେଳେ ସେ ମୋ ରାସ୍ତାରେ ଚକ୍କର କାଟୁଛି ଏବଂ ମୋତେ ଯାତୁ ସ୍ୟାତୁ ବିଭିନ୍ନ ପ୍ରକାରର ଇସାରା କରୁଛି, ତାହା କହିହେବନି । ଆପଣ ଯଦି ତାକୁ ଆମ ଘରକୁ ଆସିବା ବନ୍ଦ କରିଦିଅନ୍ତି ବହୁତ ଭଲ ହେବ । ମୁଁ ନଜ ପାଇଁ ବଂଶରେ କୌଣସି କଳଙ୍କ ଲଗାଇବାକୁ ଦେବିନି । ଏମିତି କିଛି କରିବା ପୂର୍ବରୁ ମୁଁ ମୃତ୍ୟୁ ପସନ୍ଦ କରିବି । ମୁଁ ଅଭାଗିନୀ ଯଦି ମରିଯାଏ, ତେବେ ତୁମ ପାଇଁ ଆହୁରି ଦି'ଭଉଣୀ ଅଛନ୍ତି । ମୋ କଥା ବି ଆପଣମାନଙ୍କର ଆଉ ଏତେ ମନେ ପଡ଼ିବିନି । ମୁଁ ସେଇ ଦେଶର ଝିଅ, ଯେଉଁ ଦେଶର କୁମାରୀମାନେ ନିଜର ଇଜ୍ଜତକୁ ରକ୍ଷା କରିବା ପାଇଁ ବହୁତ ବଡ଼ ବଡ଼ ବଳିଦାନ ଦେଇଛନ୍ତି । ଆପଣଙ୍କ ଭଉଣୀ ଆପଣଙ୍କ ଇଜ୍ଜତମହତର ଧ୍ୟାନ ରଖିବ । ଭାଇ ମୋତେ ବିଶ୍ୱାସ କର । ଏହା ସମ୍ଭ୍ରାନ୍ତ ଭୂମଣ୍ଡଳରେ ବିଦିତ ଯେ ଝିଅ ହେଉଛି କୁଳର ସମ୍ମାନ । ବଂଶର ଗାରିମା ଉପରେ ମୁଁ କେବେ ଆଘାତ କରବାକୁ ଦେବି ନାହିଁ ।

ଆପଣଙ୍କର ଅଭାଗିନୀ ଅଥଚ ଆଜ୍ଞାଧୀନା

ଭଉଣୀ 'କମଳା'

ଏ ଚିଠିଟିକୁ ସେ ଭାରତୀୟ ନାରୀର ମର୍ଯ୍ୟାଦା ସହ ଲୁହରେ ଭିଜାଇଲା ଏବଂ ଖାତାରୁ ଆଉ ଏକ କାଗଜ ଫାଡ଼ି ଲେଖିବାରେ ଲାଗିଲା-

ଆଦରଣୀୟ ରତନ ଭାଇ !

କିନ୍ତୁ ପୁଣି ଏହାକୁ କାଟିଦେଇ ସମ୍ବୋଧନ ନୂଆପ୍ରକାରେ ଲେଖିଲା- ପରମ ପୂଜ୍ୟ ଭାଇ । ହଠାତ୍ ମୋ ଚିଠି ପାଇ ଆଶ୍ଚର୍ଯ୍ୟାନ୍ୱିତ ହେବ । କିନ୍ତୁ ଯେତେବେଳେ ଭଉଣୀର ମମତା ଉଦ୍‌ବେଳିତ ହୋଇ ପ୍ରବାହିତ ହେଉଛି ଆପଣ ସ୍ୱୀକାର କରିବେ ବୋଲି ଆଶା । ମୁଁ ନିଜର କାନି ପାତି ଆପଣଙ୍କଠାରୁ କିଛି ମାଗିବାକୁ ଚାହୁଁଛି । ନିରାଶ

କରିବେନି ବୋଲି ଆଶା । ମୁଁ ଆପଣଙ୍କୁ ସବୁବେଳେ ଆଦରର ସହ ଦେଖିଥାଏ । ମୁଁ ଭିକ୍ଷା ମାଗୁଛି କି ଆପଣ ମୋତେ ଛୋଟ ଭଉଣୀ ଭଳି ସ୍ୱୀକାର କରନ୍ତୁ ଏବଂ ମୁଁ ଆପଣଙ୍କୁ ଭାଇ ବୋଲି ଗ୍ରହଣ କରେ, ଏଭଳି ସୌଭାଗ୍ୟ ମୋତେ ମିଳୁ । ଆପଣ ସ୍ୱୀକାର କରନ୍ତୁ କି ନାହିଁ କିନ୍ତୁ ଏ ହତଭାଗିନୀ ଆପଣଙ୍କୁ ଭାଇ ରୂପେ ସ୍ୱୀକାର କରିସାରିଛି । ଭାଇ ଭଉଣୀଠାରୁ ବଳି ଏ ଦୁନିଆଁରେ କିଛି ବଡ଼ ସମ୍ପର୍କ ନାହିଁ । ନିଜ ଦେଶରେ ମୁସଲମାନ ଭାଇମାନେ ବି ହିନ୍ଦୁ ଭଉଣୀଙ୍କ ନିମିତ୍ତ ଦେହତ୍ୟାଗ କରିଛନ୍ତି । ପୁଣି ଆପଣ ତ ଜଣେ ହିନ୍ଦୁ । ଆମର ଜାତି ହୁଏତ ଭିନ୍ନ । କିନ୍ତୁ ମନର ସମ୍ପର୍କ ଏକ । ଆପଣ ଆଜିଠୁଁ ମୋତେ ଭଉଣୀ ବୋଲି ଧରିନେବେ ତ ? ଯଦି ଏକଥା ଆପଣ ନ ମାନନ୍ତି ମୁଁ କାନ୍ଦି କାନ୍ଦି ପ୍ରାଣତ୍ୟାଗ କରିବି । ଆପଣ ଯଦି ମୋତେ ଭଉଣୀ ବୋଲି ଭାବି ନଥାନ୍ତେ, ତେବେ ଆପଣ କ'ଣ ମୋର ଏତେବଡ଼ ମଙ୍ଗଳ କରିଥାଆନ୍ତେ । ପ୍ରକୃତରେ ଆପଣ ମୋତେ ରାସ୍ତା ଦେଖାଇଛନ୍ତି । ମୋ ଭଳି ଅନ୍ଧୁଣୀକୁ ଖରାପ ଗାତରେ ପଡ଼ିବାରୁ ବଞ୍ଚାଇଛନ୍ତି । ମୁଁ ମନ ଭିତରେ ଆପଣଙ୍କର ଏ ଦୟାର ଭାରରେ ଦବିଯାଉଛି । ଆପଣ ଯଦି ଭାଇଙ୍କୁ ଏସବୁ କହିନଥାନ୍ତେ ମୁଁ କେଉଁଠି ପହଞ୍ଚିଥାଆନ୍ତି, ତାହା ଜାଣିନି । ଆପଣ ମୋତେ ନୂଆ ରାସ୍ତା ଦେଖାଇଛନ୍ତି, ମୋଭଳି ପାଗଳିଟାକୁ ପାପରୁ ଉଦ୍ଧାରିଛନ୍ତି, ଏ ଉପକାର ଜନ୍ମ ଜନ୍ମାନ୍ତର ଯାଏ ଭୁଲି ପାରିବିନି । ମୁଁ ଆପଣଙ୍କୁ କଥା ଦେଉଛି ଯେ ବୀରେନ୍ଦ୍ରର ଛାଇକୁ ବି ମୁଁ ଘୃଣା କରେ ଏବଂ ଭ୍ରାତୃ ଦ୍ୱିତୀୟାରେ ଆପଣଙ୍କୁ ରାକ୍ଷୀ ବାନ୍ଧିବି । ବହୁତ ନାଚିବ ଓ ଗାଇବି । ମୋତେ ଭାଇ ମିଳିଯାଇଛି । ଭାଇଠାରୁ ବଳି ଆଉ କୌଣସି ବଡ଼ ଜିନିଷ ପରମ ପିତା ଜଗଦୀଶ୍ୱର ନିର୍ମାଣ କରିନାହାନ୍ତି । ସେଦିନ ମୋତେ ମିଠାଇ ଖୁଆଇବେ ତ ? ଯଦି ନ ଖୁଆନ୍ତି ତେବେ ରାଗିଯିବି । ଯେତେ ମନାଇଲେ ବି ମାନିବିନି । କିନ୍ତୁ କ'ଣ ସଂସାରର ଲୋକମାନେ ଆମ ସମ୍ବନ୍ଧକୁ ପବିତ୍ରତାର ସହ ଦେଖିବେ ? କେବେ ନୁହଁ । ଏମିତି ହୋଇପାରେ ଯେ ମୋ ଭଳି ହତଭାଗିନୀ ପାଇଁ ଆପଣଙ୍କୁ ବଦନାମ୍ ହେବାକୁ ପଡ଼ିପାରେ । କିନ୍ତୁ ଆପଣଙ୍କୁ କେବେ ସଙ୍କଟରେ ପକାଇବିନି । ଆପଣ ମୋତେ କଥା ନ ହେବାଟା ଠିକ୍ ହେବ, କିନ୍ତୁ ନିଜର ସୁନ୍ଦର ଚେହେରା ଅବଶ୍ୟ ମୋତେ ଦେଖାଇ ଯାଉଥିବେ । ମୋର କଥା ନ ହେବାକୁ ଅନ୍ୟ କୌଣସି ଦୃଷ୍ଟିରେ ନିଅନ୍ତୁ ନାହିଁ । ମୁଁ ସବୁଦିନ ପାଇଁ ହିଁ ଆପଣଙ୍କର ଭଉଣୀ । ଆପଣ ମୋର ଏହି ବିନତି ସ୍ୱୀକାର କରିଛନ୍ତି ଏହା ପ୍ରଦର୍ଶିତ କରିବାକୁ ଆପଣ ଆସନ୍ତାକାଲି ସକାଳେ ଆମ ଘରକୁ ମୁଣ୍ଡରେ ମହାବୀରଙ୍କର ସନ୍ଦୂର ଲଗାଇ ଆସିବେ । କାଲି ମଧ ମଙ୍ଗଳବାର । ମୁଁ ଆପଣଙ୍କ ମୁଣ୍ଡରେ ଟୀକା ଲଗାଇଥିବାର ଦେଖିବି ଏବଂ ଦିନେ ଏଇ ପାପୀ ହାତରେ ତିଳକ ଲଗାଇ ପବିତ୍ର କରିବି, ଯେଉଁ ହାତ ବୀରେନ୍ଦ୍ରଙ୍କୁ ଚିଠି ଲେଖି ମୋତେ ପାପର ଭାଗୀଦାର କରିଛି ।

ଏ ଚିଠି ଆପଣ କାହାରିକୁ ଦେଖାଇବେ ନାହିଁ । ଆପଣଙ୍କୁ ଏ ଅଭାଗିନୀ ଭଉଣୀର

ରାଣ । ମୁଁ ମରିଗଲେ କ'ଣ ଆପଣଙ୍କୁ ଦୁଃଖ ଲାଗିବନି ?

ସବୁଦିନ ପାଇଁ ଆପଣଙ୍କର ଆଦରର ଭଉଣୀ

'କମଳା'

ଚିଠି ଲେଖିସାରି ସେ ଚୁପ୍‌ଚାପ୍ ଶୋଇଗଲା । ପୁଣି ଉଠିପଡ଼ି ଖାତାରୁ ଆଉଗୋଟେ କାଗଜ ଫାଡ଼ିଲା । କିନ୍ତୁ ତାକୁ ଏହା କମ୍ ଲାଗିବାରୁ ଆହୁରି ତିନି ଚାରିପୃଷ୍ଠା ଛିଣ୍ଡାଇ ଲେଖିବାରେ ଲାଗିଲା- ''ମୋର ସୁନ୍ଦର ଦୁନିଆଁର ଫୁଲର ରଜା ! ତସ୍‌ଲିମ୍ !''

ଆପଣଙ୍କୁ ପ୍ରାଣନାଥ, ଏହା ଆଶ୍ଚର୍ଯ୍ୟ ଲାଗିପାରେ ଯେ ଆପଣଙ୍କ କମଳା ଏ ଉର୍ଦ୍ଦୁ କେଉଁଠୁ ଶିଖିଲା । ମୋ ବାନ୍ଧବୀ ସୟିଦା ସହ ଆପଣଙ୍କ ବିଷୟରେ କଥା ହୋଇଥିଲି, ସେ ଏସବୁ କହିଥିଲା ମୋତେ । ଆପଣ କେବେ ଅସନ୍ତୁଷ୍ଟ ହେବେନି ଯେ ମୁଁ ଆପଣଙ୍କ ବିଷୟରେ ଅନ୍ୟମାନଙ୍କ ସହ କାହିଁକି କଥା ହେଲି । କିନ୍ତୁ ବିରହର ଜ୍ୱାଳାରେ ମୁଁ କରିବି ବା କ'ଣ ? ଆପଣଙ୍କ କଥା ଭାବି ଭାବି ଏ ଜୀବନ ଅତିବାହିତ କରୁଛି । ଆପଣ ବି ସୟିଦାକୁ ଜାଣିଛନ୍ତି । ଆମେ ସବୁ ତାକୁ ଚିଡ଼େଇବା ପାଇଁ ତା ନାମ ଇମ୍‌ଲି ରଖିଛୁଁ ।

ହେ ମୋର ରାଜା ! ମୁଁ ଆଜି ବହୁତ ଦୁଃଖୀ । ଘର ଲୋକଙ୍କୁ ଆମର ପ୍ରେମକାହାଣୀ ଜଣାପଡ଼ିଛି । କିନ୍ତୁ ଆପଣଙ୍କ ସାଙ୍ଗ ରତନ ହିଁ ଏସବୁ ଚୁଗୁଲି କରିଛି । ଆପଣ ତାକୁ ନିଜର ବନ୍ଧୁ ବୋଲି ଭାବୁଛନ୍ତି । ପ୍ରକୃତ ବନ୍ଧୁ ନିଜ ବନ୍ଧୁ ନିମନ୍ତେ ପ୍ରାଣ ପର୍ଯ୍ୟନ୍ତ ବିସର୍ଜନ କରିପାରେ । ସେ ଆମକୁ ଈର୍ଷା କରୁଚି, ମୋ ହୃଦୟରୁ ମୁଁ ଆପଣଙ୍କୁ ସବୁଦିନ ପାଇଁ ବାହାର କରିଦିଏଁ ବୋଲି ଚାହୁଁଚି । ଏ କେବଳ ଚିତାଗ୍ନି ଜଳିଲାବେଳେ ହିଁ ସମ୍ଭବ, ଯେତେବେଳେ ସବୁକିଛି ପୋଡ଼ିଯିବ, ତା'ପରେ ହୃଦୟର ପାଳି ଆସିବ । ତୁମ ବିନା ବଞ୍ଚିବି କେମିତି ? ଭାବିଲେ ଘଣ୍ଟା ଘଣ୍ଟା କାନ୍ଦୁଛି, କିନ୍ତୁ ତୁମେ ଏତେ କଠୋର ? ତୁମେ ଯେ ଏତେ ନିର୍ଦ୍ଦୟ ଏହା ଜାଣିନଥିଲି । ଆଜି ସନ୍ଧ୍ୟାରେ ଏପଟେ ଗଲନି କାହିଁକି ? ଯେଉଁଦିନ ତୁମକୁ ଦେଖିପାରେନା, ସେଦିନ ଓ ରାତି କେମିତି ବିତେ, ତାହା ମୁଁ କେବଳ ଜାଣେ, କିନ୍ତୁ ତୁମର କ'ଣ ? ମୁଁ ମରିଗଲେ ବି ତୁମକୁ କେବେ ଦୁଃଖ ହେବନି ।

ସମାଜ ମୋତେ ଦୁଃଖ ଦେଉଛି କିନ୍ତୁ ତୁମେ ଦିଅନା । ମୁଁ ତୁମକୁ ସେ ରତନ ସଙ୍ଗେ ଆଉ ଦେଖିବାକୁ ଚାହୁଁନି । ସେ ଆମ ଦୁନିଆଁରେ ନିଆଁ ଲଗାଇବାକୁ ଚାହୁଁଛି । ତୁମକୁ ମୋ ରାଣ, ତୁମେ ତା' ସଙ୍ଗେ ନ ରହିଲେ ହିଁ ମୋ ମୁହଁ ଦେଖିବାକୁ ପାଇବ । ସେ ଖୁବ୍ ନୀଚ । ମୋତେ କହିଲା ଯେ ଯଦି ଆଜିଠାରୁ ଚିଠି ଲେଖିବା ବନ୍ଦ ନହୁଏ ତେବେ ସେ ତୁମର ସବୁ ଚିଠି ଆଣି ବାପାଙ୍କ ଆଗରେ ରଖିଦେବ । ମୁଁ କହିଲି ତୁମକୁ ମୋ ଚିଠି ମିଳବ ହିଁ ନାହିଁ । ସେ କହିଲା- ''ମୁଁ ତୁମର ରାଇଟିଂ ଲେଖି ନେବି ।'' ଆମେ ତା'ର କ'ଣ ବିଗାଡ଼ିଛନ୍ତି ଯେ ସେ ଆମ ପଛରେ ପଡ଼ିଛି ? ପ୍ରାଣନାଥ ! କେବେ ସେ ମୋର ରାଇଟିଂକୁ କପି କରି ତୁମକୁ ଉତ୍ତ୍ୟକ୍ତ କରିପାରେ । ହାୟ ! ସେତେବେଳେ ମୁଁ

କରିବି କ'ଣ ? କିନ୍ତୁ ମୋର ମୋ ଉପରେ ବିଶ୍ୱାସ ଅଛି । ତା' କଥାରେ କେବେ ବିଶ୍ୱାସ କରବନି, ତା' ସହ କଥା ବି ହେବନି । ମୁଁ ବି ତା'ର ଆମ ଘରକୁ ଯିବା ଆସିବା ବନ୍ଦ କରିବାର ଉପାୟ ଖୋଜି ନେଇଛି । ତୁମେ କେବେ ମୋ ଆଡୁ ମୁହଁ ବୁଲେଇ ନେବନି । ମୋ ରାଜା ! କାଲି ମାଆଙ୍କ ସହ ଜଣେ ବନ୍ଧୁଙ୍କ ଘରକୁ ଯିବି । ପହରିଦିନ ସକାଳେ ନିଶ୍ଚିତ ମୋତେ ଦେଖା ଦେବ । ମୁଁ ଗଳି ପାଖ ରୁମ୍‌ରେ ହିଁ ଥିବି । ସମାଜ ଭଲ କି ଖରାପ ଯାହା ଭାବୁଛି ଭାବୁ । ସେ ଆମକୁ ସର୍ବନାଶ କରି ଆମ ପ୍ରେମର ପ୍ରଦୀପକୁ ଲିଭାଇ ଦେବାକୁ ଚାହେଁ, କିନ୍ତୁ ତାହା ଜଳିବ... ସୌଭାଗ୍ୟ ଆସିଲା, ପୁଣି ଚାଲିଗଲା, କିନ୍ତୁ ଏ ଦୁନିଆଁ ହିଁ ଆମକୁ ବରବାଦ୍ କଲା ।'' ଏ ଗୀତ ମୋତେ ବହୁତ ଭଲଲାଗେ । ହାରମୋନିୟମ୍‌ରେ ବି ମୁଁ ଗାଇପାରେ । ହେ ମୋର ଦେବତା ବିଦାୟ । ମଧୁର ମିଳନ । ଚିଠି ଦେବ ।

ତୁମର ଦାସୀ
'କମଳା'

ପତ୍ର ଲେଖିସାରି କମଳା ନିଜ ବ୍ଲାଉଜ୍ ଭିତରେ ରଖିଲା । ମନ ଶାନ୍ତ ହୋଇଯାଇଥିଲା । ସକାଳ ହେବାରୁ ସେ ବଡ଼ଭାଇଙ୍କର ଚିଠି ତାଙ୍କ ସାର୍ଟ ପକେଟରେ ରଖିଦେଲା ଏବଂ ଚାଲିଆସିଲା । ଭାଇ ସକାଳୁ ଉଠି, ସାର୍ଟ ପିନ୍ଧି ଗୋଡ଼ରେ ଚପଲ ଗଳାଇ ବୁଲିବା ପାଇଁ ବାହାରିଗଲେ । କମଳା ସ୍କୁଲ ଯିବାପାଇଁ କାମରେ ଲାଗିଗଲା । ସବୁଦିନ ଭଳି ରତନ ଆସିବାରୁ କମଳା ସିଡ଼ିରେ ପହଞ୍ଚି ତା' ହାତରେ ଚିଠି ଧରେଇଦେଇ ତଳକୁ ଚାଲିଆସିଲା ।

କୋଠରୀରେ ପହଞ୍ଚି ସେ ବିଚଳିତ ହୋଇଉଠିଲା । ବାପା ସ୍କୁଲ ଯିବା ପାଇଁ ପ୍ରସ୍ତୁତ ହେଉଥିଲେ । ମାଆ ତାଙ୍କ ପାଇଁ ପାନ ଭାଙ୍ଗୁଥିଲେ । ମୁନ୍ନା ମାଆଙ୍କ ଗୋଡ଼ରେ ଘଷି ହେଉଥିଲା ଓ ହାତକୁ ଟାଣୁଥିଲା । କମଳା ଗୋଡ଼ ଧୋଇବାର ବାହାନା କରି ସେଇଠି ଅଟକିଗଲା । ଉପରେ ରତନ ଥିଲା । ପାନଡବା ପାଖ ଆଲମୀରାର ଉପରେ ଲାଗିଥିବା ବହୁତ ପୁରୁଣା ବାହାଘର ଫଟୋକୁ ଦେଖି ଚଷମା କାଢ଼ି ମାଷ୍ଟର ବାବୁ ଖୁବ୍ ପ୍ରେମ ସହକାରେ ପତ୍ନୀଙ୍କ କାନ୍ଧରେ ହାତରଖି କହିଲେ- ''ଟିକିଏ ଏଇ ଫଟୋକୁ ଚାହଁ ତ !'' କମଳାର ମାଆ ସେମିତି ପାନ ଦେଉଁ ଦେଉଁ କହିଲେ- ''ସେଥିରେ କ'ଣ ଦେଖିବି ?'' ''ଏ ଫଟୋରେ ତୁମେ ଏମିତି ମୁହଁକରି ବସିଛ ଯେ ଯେମିତି ମୋ ସହ ବାହା ହେବାକୁ ତୁମର ଇଚ୍ଛା ନାହିଁ ।'' ମାଷ୍ଟରବାବୁ ଆଖି ମିଟି ମିଟି କର କହିଲେ- ''ତୁମେ ଏଆଡ଼େ ସେଆଡ଼େ ନଜର ପକାଉଥିବ, ଆମେ ତ ବାହାଘର ପୂର୍ବରୁ କୌଣସି ପୁଅ ସହିତ କଥା ବି କେବେ ହେଇନାହୁଁ ।'' ପାନ ମୋଡୁ ମୋଡୁ କମଳାର ମାଆ ଧୀରେ ହସି ହସି କହିଲେ ।

ଦାନ୍ତରେ ଲାଗିଥିବା ଖାଦ୍ୟକୁ ସଫାକରି ଟୋପିର ଭିତରପଟେ ଥିବା କାଗଜ ଅସ୍ତକୁ ଠିକ୍ କରି ମାଷ୍ଟରବାବୁ କହିଲେ, ''କିଏ ଜାଣେ ?''

ତା'ପରେ କମଳାର ମାଆ ତାଙ୍କ ମୁହଁରେ ପାନ ଗୁଞ୍ଜିଦେଇ ଏବଂ ମୁନ୍ନାର ବାହୁକୁ ଧରି ଟାଣି ଟାଣି ନେଇଯାଇ କହିଲେ,- ''ଗୋଟେ ମିନିଟ୍ ପାଇଁ ବି ଏକା ରହିବାକୁ ଦେଉନାହାନ୍ତି, ଯେତେବେଳେ ଦେଖ ତ ସେତେବେଳେ...

ଆଉ ମାଷ୍ଟର ଅତ୍ୟନ୍ତ ଆନନ୍ଦ ସହକାରେ କମଳାର ମାଆ ମୁହଁକୁ ପ୍ରେମପୂର୍ଣ୍ଣ ଦୃଷ୍ଟିରେ ଚାହିଁଲେ- କିଛିଟା ପ୍ରେମପୂର୍ଣ୍ଣ ବାତାବରଣ ସୃଷ୍ଟି ହେଲା । କିନ୍ତୁ ସେତେବେଳେ ସ୍କୁଲ ଟାଇମ୍ ହୋଇଯାଇଥିଲା । ପିଲାଟି ଗୋଡ଼ କଚାଡ଼ି କଚାଡ଼ି ବାହାରକୁ ବାହାରି ଯିବାରୁ କମଳା ତାକୁ ଧରିନେଇ କହିଲା- ''କ'ଣ ହେଲା ମୁନ୍ନାବାବୁ ?''

''ପଇସା ଦେବି'' କହି କମଳା ତାକୁ ଧରି ବ୍ଲାଉଜ୍ ଭିତରୁ ତିନି ଚାରିଟି ଲେବନ୍‌ଚୁସ୍ ଓ ଚିଠି ତା' ହାତରେ ଦେଇ ଧୀରେ କହିଲା- ''ଏ କାଗଜ ଜଲ୍‌ଦି ଯାଇ ସେୟାକୁ ଦେଇଆ, ଆଉ କାହାକୁ ଦେବୁନି, ଆସିଲେ ଆହୁରି ଲେବନ୍‌ଚୁସ୍ ଦେବି ।'' ଏବଂ ସେ ଜଲଦି ଜଲ୍‌ଦି ଉପରକୁ ଚାଲିଗଲା । ମାଷ୍ଟରବାବୁ ନିଜର ବାଡ଼ି ଧରି ସ୍କୁଲ ବାହାରୁଥିଲେ, ବାରଣ୍ଡାରେ ଠିଆ ହୋଇଥିବା କମଳାର ମାଆକୁ ବୁଲିପଡ଼ି ଦେଖୁଥିଲେ ଓ ସ୍କୁଲକୁ ଯିବା ଗଳିରେ ଆଗେଇ ଯାଉଥିଲେ । ଛାତ ଉପରେ କମଳା ଛିଡ଼ାହୋଇ ବାଳରେ ବାସ୍ନାତେଲ ଲଗାଇ ଅନ୍ୟ ଗଳିରେ ଆଗକୁ ଯାଉଥିବା ମୁନ୍ନାର ଗତିବିଧିକୁ ଲକ୍ଷ୍ୟ କରୁଥିଲା । ଏଇମିତି ଦିନ ବିତିଯାଉଥିଲା ଏବଂ ପ୍ରେମର ନିର୍ବାହ ହୋଇ ଚାଲିଥିଲା, ଗୋଟିଏ ପିଢ଼ିରୁ ଅନ୍ୟ ପିଢ଼ିକୁ ... ।

# ଜର୍ଜ ପଞ୍ଚମଙ୍କ ନାକ

ଏ ସେ ସମୟର କଥା, ଯେତେବେଳେ ଇଂଲଣ୍ଡର ରାଣୀ ଦ୍ୱିତୀୟ ଏଲିଜାବେଥ୍‌ଙ୍କର ଭାରତ ଆସିବାର ଥିଲା । ସମ୍ବାଦପତ୍ରରେ ତାହା ଥିଲା ଚର୍ଚ୍ଚାର ବିଷୟ । ପ୍ରତିଦିନ ଲଣ୍ଡନର ଖବରକାଗଜମାନଙ୍କରୁ ଖବର ଆସୁଥିଲା ଯେ ଏହି ରାଜକୀୟ ଆଗମନ ପାଇଁ କେମିତି ଜୋର୍‌ସୋର୍ ପ୍ରସ୍ତୁତି ଚାଲିଛି । ରାଣୀ ଏଲିଜାବେଥ୍‌ଙ୍କ ଦରଜୀ ବ୍ୟତିବ୍ୟସ୍ତ ଥିଲା ଯେ ହିନ୍ଦୁସ୍ଥାନ, ପାକିସ୍ଥାନ ଓ ନେପାଳ ଗସ୍ତ ସମୟରେ ରାଣୀ କେତେବେଳେ କ'ଣ ପିନ୍ଧିବେ ? ତାଙ୍କ ସେକ୍ରେଟାରୀ ତଥା ଗୋଇନ୍ଦାଙ୍କର ମଧ୍ୟ ତାଙ୍କ ଆଗମନ ପୂର୍ବରୁ ଏହି ମହାଦ୍ୱୀପକୁ ଜରୁରୀ ଗସ୍ତ କରିବାର ଥିଲା... ଏହା ଥଟ୍ଟାର ବିଷୟ ନଥିଲା । ଏହା ଥିଲା ନୂତନ ଯାତ୍ରାର କଥା... ସୈନ୍ୟ ସାମନ୍ତଙ୍କୁ ନେଇ ବାହାରିପଡ଼ିବାର ସମୟ ଆସିଯାଇଥିଲା,

ସେଥିପାଇଁ ଫଟୋଗ୍ରାଫରମାନଙ୍କର ଫଉଜକୁ ତୈୟାର ରଖା ହେଉଥିଲା । ଲଣ୍ଡନର ସମ୍ବାଦପତ୍ରର କଟିଂ ହିନ୍ଦୁସ୍ତାନୀ ଖବରକାଗଜରେ ତା' ପରଦିନ ଲାଗିଥିବାର ଦେଖାଯାଉଥିଲା... କି ରାଣୀ ଏମିତି ଏକ ଫିକାରଙ୍ଗର ସୁଟ୍ ତିଆରି କରଛନ୍ତି ଯାହାର ରେଶମୀ କନା ହିନ୍ଦୁସ୍ଥାନରୁ ହିଁ ମଗାଯାଇଥିଲା... ଏବଂ ପ୍ରାୟ ଚାରିଶହ ପାଉଣ୍ଡ ଏହି ସୁଟ୍‌ରେ ଖର୍ଚ୍ଚ ହୋଇଛି ।

ରାଣୀ ଏଲିଜାବେଥ୍‌ଙ୍କର ଜାତକ ଛପାଗଲା । ପ୍ରିନ୍ସ ଫିଲିପ୍‌ଙ୍କର ଗୁଣକୀର୍ତ୍ତି ଛପାଗଲା, ଏମିତି ବି ଆହୁରି ତାଙ୍କର ଚାକର, ରୋଷେୟା, ଖାନ୍‌ସାମା ଓ ଅଙ୍ଗରକ୍ଷକମାନଙ୍କର ସଂପୂର୍ଣ୍ଣ ଜୀବନୀ ବି ପ୍ରକାଶିତ ହେଲା । ରାଜମହଲରେ ରହୁଥିବା ପୋଷାକୁକୁରଙ୍କର ଚିତ୍ର ବି ଖବରକାଗଜରେ ଛପାଗଲା... ।

ଖୁବ୍ ଧୁମ୍‌ଧାମ ଓ ହା-ହୋଲ୍ଲା । ଇଂଲଣ୍ଡରେ ଶଙ୍ଖ ବାଜୁଥିଲା ଓ ତା' ଆୱାଜ୍ ଶୁଭୁଥିଲା ଭାରତରେ ।

ଏହି ଖବରକାଗଜରେ ହିଁ ଭାରତରେ ଥିଲା ଖୁବ୍ ଉତ୍ତେଜନା, ରାଜଧାନୀରେ ଥିଲା ଗହଳ ଚହଳ... ରାଣୀ ଯେଉଁ ପାଞ୍ଚ ହଜାର ଟଙ୍କାର ରେଶମୀ ସୁଟ୍‌କୁ ପିନ୍ଧି ପାଲମ୍ ଉଡ଼ାଜାହାଜ ଘାଟିରେ ଓହ୍ଲାଇବେ ତାଙ୍କ ପାଇଁ କିଛି ହେବା ତ ଜରୁରୀ । କିଛି କାହିଁକି ବହୁତ କିଛି ହେବା ଆବଶ୍ୟକ । ଯାହାର ରୋଷେୟା ପ୍ରଥମ ମହାଯୁଦ୍ଧରେ ଲଢ଼ି ଜୀବନକୁ ବଳିଦେଇ ସାରିଛନ୍ତି... ତାଙ୍କର ଷ୍ଟାଇଲ୍ ଓ ଠାଣି ଅନୁପମ... ସେହି ରାଣୀ ଦିଲ୍ଲୀ ଆସୁଛନ୍ତି... ।

ନୂଆଦିଲ୍ଲୀ ନିଜକୁ ଦେଖିବାରେ ଲାଗିଲା ଏବଂ ଆଶ୍ଚର୍ଯ୍ୟରେ ମୁହଁରୁ ବାହାରିପଡ଼ିଲା- ''ଭଗବାନଙ୍କର ଦୟାରୁ ସେ ଆସୁଛନ୍ତି ଆମ ଘରକୁ ଆଜି ।'' ଆମେ କେବଳ ଦେଖୁଛୁ ତାଙ୍କର ଆଗମନକୁ ଓ ନିଜର ଘରକୁ ଏବଂ ଦେଖୁଁ ଦେଖୁଁ ନୂଆଦିଲ୍ଲୀର କାୟା ବି ପରିବର୍ତ୍ତିତ ହୋଇଗଲା ।

ଆଉ ଆଶ୍ଚର୍ଯ୍ୟ କଥା ଘଟିଲା ଯେ କେହି କାହାରିକୁ କହିଲେନି, କେହି କାହାରିକୁ ଦେଖିଲେନି- କିନ୍ତୁ ସଡ଼କସବୁ ଯୁବକ ପାଲଟିଲେ, ବାର୍ଦ୍ଧକ୍ୟର ଧୂଳି ସଫାହେଲା । କୋଠାମାନେ ସୁନ୍ଦରୀ ତରୁଣୀଙ୍କ ଭଳି ସଜେଇ ହେଲେ ନବଶୃଙ୍ଗାରରେ... ।

କିନ୍ତୁ ଏକ ବହୁତ ବଡ଼ ଅସୁବିଧା ଥିଲା... ତାହା ଥିଲା ପଞ୍ଚମ ଜର୍ଜଙ୍କର ନାକ ! ...ନୂଆଦିଲ୍ଲୀରେ ସବୁ କିଛି ଥିଲା... କେବଳ ନାକ ନଥିଲା ।

ଏଇ ନାକର କାହାଣୀ ବି ଥିଲା ସୁଦୀର୍ଘ । ଏ ନାକ ନିମିତ୍ତ ହିଁ ଖୁବ୍ ହା ହୋଲ୍ଲା ହୋଇଥିଲା ଏକଦା... ଆନ୍ଦୋଳନ ମଧ୍ୟ । ରାଜନୈତିକ ଦଳମାନେ ପ୍ରସ୍ତାବ ପାଶ୍ କରିଥିଲେ, ଚାନ୍ଦା ଆଦାୟ କରିଥିଲେ । କିଛି ନେତାମାନେ ଭାଷଣ ଦେଇଥିଲେ । ଗରମାଗରମ ଯୁକ୍ତିତର୍କ ବି ହୋଇଥିଲା । ଖବରକାଗଜର ପୃଷ୍ଠାଗୁଡ଼ିକ ଭର୍ତ୍ତି ବି ହୋଇଯାଇଥିଲା ଏଇ କଥାକୁ ନେଇ ପଞ୍ଚମଜର୍ଜଙ୍କର ନାକ ରହିବାକୁ ଦିଆଯିବ ନା ହଟେଇ ଦିଆଯିବ ! ଆଉ ଯେମିତି ସବୁ ରାଜନୈତିକ ଆନ୍ଦୋଳନରେ ଘଟିଥାଏ କି, କିଛି ଥାଆନ୍ତି ପକ୍ଷରେ ତ ଆଉ କେତେକ

ବିପକ୍ଷରେ ଏବଂ ଆଉ ବେଶୀ ଭାଗ ଲୋକ ନୀରବ ହିଁ ଥିଲେ । ନୀରବ ରହିଥିବା ଲୋକମାନଙ୍କ ଶକ୍ତି ଦି'ଆଡ଼େ ହିଁ ଥିଲା... ।

ଏଇ ଆନ୍ଦୋଳନ ଚାଲୁ ରହିଥିଲା । ପଞ୍ଚମ ଜର୍ଜଙ୍କର ନାକ ନିମିତ୍ତ ସଶସ୍ତ୍ର ପହରୀ ନିଯୁକ୍ତ କରି ଦିଆଯାଇଥିଲା... । କାହାର ଦୁଃସାହସ ଯେ କେହି ନାକ ପର୍ଯ୍ୟନ୍ତ ପହଞ୍ଚି ପାରିବ ! ହିନ୍ଦୁସ୍ତାନର ବିଭିନ୍ନ ସ୍ଥାନରେ ଏଇଭଳି ନାକ ଛିଡ଼ା କରାଯାଇଥିଲା ଏବଂ ଯାହାର ହାତ ପହଞ୍ଚି ଯାଉଥିଲା ତାକୁ ବହୁ ଆଡ଼ମ୍ବର ସହକାରେ ଓହ୍ଲେଇ ଆଣି ଚିଡ଼ିଆଘରେ ପହୁଞ୍ଚାଇ ଦିଆଯାଉଥିଲା ଏବଂ ଏହି ରାଜସିକ ନାକ ପାଇଁ ଗରିଲା ଯୁଦ୍ଧ ଜାରି ଥିଲା... ।

ଠିକ୍ ସେହି ସମୟରେ ଗୋଟେ ଅଘଟଣ ଘଟିଗଲା... ଇଣ୍ଡିଆ ଗେଟ୍ ସାମନାରେ ଥିବା ପଞ୍ଚମଜର୍ଜ ସାହେବଙ୍କ ନାକ ହଠାତ୍ ଉଭେଇଗଲା । ସଶସ୍ତ୍ର ପହରୀ ନିଜ ନିଜ ସ୍ଥାନରେ ମୁତୟନ ଥିଲେ, ପହରା ଦେଉଥିଲେ... ଏବଂ ଲାଟ୍‌ସାହେବଙ୍କ ନାକ ସେଠାରୁ ହରଣ କରି ନିଆଯାଇଥିଲା ।

ରାଣୀ ଆସିବେ କିନ୍ତୁ ନାକ ନଥିବ..., ହଠାତ୍ ଚିନ୍ତା ବଢ଼ିଲା । ଖୁବ୍ ସରଗରମ ହୋଇଉଠିଲା ବାତାବରଣ । ଦେଶର ନେତୃବୃନ୍ଦଙ୍କର ଏକ ମିଟିଂ ଡକାଗଲା କି କ'ଣ କରାଯିବ ? ଶେଷରେ ସମସ୍ତଙ୍କର ମତ ଏଇଆ ଥିଲା ଯେ ସେଠାରେ ଯଦି ନାକ ନାହିଁ, ତେବେ ଆମର ମଧ୍ୟ ନାକ ରହିବ ନାହିଁ ।

ଉଚ୍ଚସ୍ତରରେ ବିଚାର ବିମର୍ଶ ଚାଲିଲା । ବୁଦ୍ଧି ଖର୍ଚ୍ଚ କରାଗଲା ଏବଂ ଏହି ନିର୍ଣ୍ଣୟ ନିଆଗଲା ଯେ ଯେକୌଣସି ମତେ ସେଠାରେ ନାକ ରହିବା ଜରୁରୀ । ତତ୍ ସଙ୍ଗେ ସଙ୍ଗେ ଏକ ମୂର୍ତ୍ତିକାରଙ୍କୁ ହୁକୁମ୍ ଦିଆଗଲା ହଠାତ୍ ଦିଲ୍ଲୀରେ ଆସି ପହଞ୍ଚିବାକୁ ।

ମୂର୍ତ୍ତି କାରିଗର ଜଣେ କଳାକାର ତ ଥିଲେ କନ୍ତୁ ଥିଲେ ଅତ୍ୟନ୍ତ ଅର୍ଥଲୋଭୀ । ଆସିବାମାତ୍ରେ ସେ ଆଦେଶ ଦେଇଥିବା ଲୋକମାନଙ୍କର ଚେହେରା ଦେଖିଲେ । ସେମାନେ ଅତ୍ୟନ୍ତ ବିଚଳିତ ଥିଲେ, କେତେଜଣ ଖୁବ୍ ଭାଙ୍ଗିପଡ଼ିଥିଲେ । ସେମାନଙ୍କର ହାଲ୍ ଦେଖି ନାଚାର କଳାକାରର ଆଖିରେ ଲୁହ ଆସିଗଲା... । ସେଉଠୁ ଗୋଟେ ଆୱାଜ ଆସିଲା ''ମୂର୍ତ୍ତିକାର ! ଜର୍ଜ ପଞ୍ଚମଙ୍କର ନାକ ଲାଗିବା ଦରକାର'' ମୂର୍ତ୍ତିଶିଳ୍ପୀ ଶୁଣିଲେ ଓ ଜବାବ୍ ଦେଲେ- ନାକ ଲାଗିଯିବ, କିନ୍ତୁ ମୋତେ ଏହା ମାଲୁମ୍ ହେବା ଦରକାର ଯେ, ଏ କେବେ ଏବଂ କେଉଁଠି ତିଆରି ହୋଇଥିଲା ? ଏ ନାକ ପାଇଁ ପଥର କେଉଁଠୁ ଅଣାଯାଇଥିଲା ।

ସବୁ ହୁକୁମ୍ ଦେବା ଲୋକମାନେ ଜଣେ ଅନ୍ୟଜଣଙ୍କ ମୁହଁକୁ ଚାହିଁଲେ... । ଜଣଙ୍କର ଦୃଷ୍ଟି ଅନ୍ୟଜଣଙ୍କୁ ସୂଚାଇଦେଲା ଯେ ଏହାର ଉତ୍ତର ଦେବାର ଦାୟିତ୍ୱ ହେଉଛି ତୁମର । ଶେଷରେ ସମସ୍ୟାଟିର ସମାଧାନ ହେଲା । ଶେଷରେ ଜଣେ କ୍ଲର୍କଙ୍କୁ ଟେଲିଫୋନ୍ କରାଗଲା ଏବଂ ସଂପୂର୍ଣ୍ଣ ଅନୁସନ୍ଧାନ କରିବାର ଦାୟିତ୍ୱ ଅର୍ପଣ କରାଗଲା... । ପ୍ରତ୍ନତତ୍ତ୍ୱ ବିଭାଗର ଫାଇଲ୍ ଘଣ୍ଟା ଚାଲିଲା, କିନ୍ତୁ କିଛି ଜଣାପଡ଼ିଲାନି । କିରାଣୀଟି ଫେରିଆସି କମ୍ପିତ ସ୍ୱରରେ

କମିଟି ଆଗରେ ବୟାନ ଦେଲା, ସାର୍ ! ମୋ ଦୋଷ ମାଫ୍ କରନ୍ତୁ, ଫାଇଲ ସବୁକିଛି ହଜମ କରିଦେଇଛି ।

ଆଦେଶକାରୀଙ୍କ ଚେହେରା ପୁଣି ଉଦାସିଆ ଦେଖାଗଲା ! ଏକ ବିଶେଷ କମିଟି ତିଆରି ହେଲା । ଏହାକୁ ଏହି ଦାୟିତ୍ୱ ଦିଆଗଲା ଯେ, ଯେମିତି ବି ହେଉ ଏ କାମ ହେବା ଆବଶ୍ୟକ ଏବଂ ଏହି ନାକର ପୁନଃସ୍ଥାପନା ଦାୟିତ୍ୱ କମିଟିର । ଶେଷରେ ମୂର୍ତ୍ତିକାରଙ୍କୁ ଡକାଗଲା ଏବଂ ଏହି ସମସ୍ୟାର ସମାଧାନ କରିଦେଲା । ସେ କହିଲା ପଥର କି ପ୍ରକାରର ଠିକ୍‌ଭାବେ ଜାଣିହେଉନି । ବିବ୍ରତ ହୁଅନ୍ତୁନି... ମୁଁ ଭାରତବର୍ଷର ପ୍ରତ୍ୟେକ ପାହାଡ଼ ପାଖକୁ ଯିବି ଏବଂ ଏଇଭଳି ପଥର ଖୋଜିକରି ଆଣିବି । କମିଟି ସଦସ୍ୟମାନଙ୍କର ଜୀବନ ପଶିଲା । ସଭାପତି ଯାଉଁ ଯାଉଁ ଗର୍ବ ସହକାରେ କହିଲେ, ''ଏମିତି କ'ଣ ଜିନିଷ ଅଛି, ଯାହା ହିନ୍ଦୁସ୍ଥାନରେ ମିଳେନା ? ପ୍ରତ୍ୟେକ ଜିନିଷ ଏଇ ଦେଶର ଗର୍ଭରେ ଲୁଚିଛି... କେବଳ ଖୋଜାଯିବାର ଆବଶ୍ୟକତା ଅଛି... ସନ୍ଧାନ କରିବା ପାଇଁ ପରିଶ୍ରମ କରିବାକୁ ହେବ, ସେଇ ପରିଶ୍ରମର ଫଳ ଆମକୁ ମିଳିବ... ଆସୁଥିବା ଯୁଗ ହେବ ଆନନ୍ଦର ଯୁଗ ।''

ସେଇ ନୀତିଦୀର୍ଘ ଭାଷଣଟି ମଧ୍ୟ ଶୀଘ୍ର ସମ୍ବାଦପତ୍ରରେ ପ୍ରକାଶିତ ହେଲା । ମୂର୍ତ୍ତିଶିଳ୍ପୀ ହିନ୍ଦୁସ୍ତାନରେ ପାହାଡ଼ିଆ ପ୍ରଦେଶ ଏବଂ ପଥରଖଣି ଗସ୍ତରେ ବାହାରି ପଡ଼ିଲେ... କିଛିଦିନ ପରେ ସେ ହତାଶ ହୋଇ ଫେରିଲେ । ତାଙ୍କ ଚେହେରାରେ ଉଦାସିଆ ପଣ... ସେ ମୁଣ୍ଡ ନୋଇଁକରି ଶୁଣାଇଲେ- ''ହିନ୍ଦୁସ୍ଥାନର କନ୍ଦି ବିକନ୍ଦି ଖୋଜି ଆସିଲି । କିନ୍ତୁ ଏ ପ୍ରକାରର ପଥର ମିଳିଲାନି ଏ ପଥର ବିଦେଶୀ ।''

ସଭାପତି ଉତ୍ତ୍ୟକ୍ତ ସ୍ୱରରେ କହିଲେ- ''ଆଣଙ୍କ ବୁଦ୍ଧିକୁ ଧିକ୍ । ବିଦେଶର ସମସ୍ତ ଜିନିଷ ଆମେ ଆପଣେଇ ନେଇଛୁଁ... ହୃଦୟ, ଜ୍ଞାନ, ମନ, ଜୀବନ ଧାରଣ, ଚାଲିଚଳଣ ସବୁ ଭାରତରେ ବଲ୍‌ଡ୍ୟାନ୍ସ ପର୍ଯ୍ୟନ୍ତ ମିଳିଯିବ, ତେଣୁ ପଥର କାହିଁକି ମିଳିବନି ।''

ମୂର୍ତ୍ତି କାରିଗର ଚୁପ୍‌ଚାପ୍ ଛିଡ଼ା ହୋଇଥିଲେ । ହଠାତ୍ ତାଙ୍କ ଆଖି ଉଜ୍ଜ୍ୱଳ ହୋଇ ଉଠିଲା । ସେ କହିଲା, ''ଗୋଟିଏ କଥା ମୁଁ କହିବା ପାଇଁ ଚାହୁଁଛି, କିନ୍ତୁ ଗୋଟିଏ ସର୍ତ୍ତରେ ଯେ ଏ ଖବର ଖବରକାଗଜବାଲାଙ୍କ ପାଖରେ ଯେମିତି ନ ପହଞ୍ଚେ... ସଭାପତିଙ୍କ ଆଖିରେ ବି ଜ୍ୟୋତି ଖେଳିଗଲା । ଚପରାସୀକୁ ଆଦେଶ ମିଳିଲା ଓ ସେ ଘରର ସବୁ ଦୁଆର ବନ୍ଦ କରିଦେଲା । ତା'ପରେ ମୂର୍ତ୍ତିକାର କହିଲେ- 'ଦେଶରେ ଆମ ନେତାମାନଙ୍କର ମୂର୍ତ୍ତି ଅଛି । ଯଦି ଆଦେଶ ମିଳିବ... ଆପଣମାନେ ଏହାକୁ ଯଦି ଠିକ୍ ବୋଲି ଭାବିବେ ମୋର କହିବା କଥା ଯେ... ଯେଉଁ ମୂର୍ତ୍ତିର ନାକ ଲାଟ୍‌ଙ୍କ ନାକ ସହ ମିଶୁଥିବ, ତାହା କାଢ଼ି ନିଆଯିବ... ।'

ସମସ୍ତେ ସମସ୍ତଙ୍କ ମୁହଁକୁ ଚାହିଁଲେ । ସମସ୍ତଙ୍କ ଆଖିରେ ଗୋଟିଏ କ୍ଷଣ ଚୁପ୍ ରହିବା ପରେ ଖୁସିର ଲହରୀ ଖେଳିଗଲା । କିନ୍ତୁ ସଭାପତି ଧୀରେ କହିଲେ, 'କିନ୍ତୁ ଖୁବ୍ ସତର୍କତାର ସହ ।'

ଆଉ କାରିଗର ପୁଣି ଦେଶସାରା ଗସ୍ତ ଆରମ୍ଭ କଲା । ପଞ୍ଚମ ଜର୍ଜଙ୍କର ଭଙ୍ଗାନାକର ମାପ ତାଙ୍କ ପାଖରେ ଥିଲା । ଦିଲ୍ଲୀରୁ ସେ ମୁମ୍ବାଇ ପହଞ୍ଚିଲା... ଦାଦାଭାଇ ନାରୋଜୀ, ଗୋଖଲେ, ତିଲକ, ଶିବାଜୀ, କାଓ୍ୱସଜୀ, ଜାହାଙ୍ଗୀର, ସମସ୍ତଙ୍କ ନାକ ସେ ମାପିଲେ ଏବଂ ଗୁଜରାଟ ଆଡ଼କୁ ଚାଲିଲେ । ଗାନ୍ଧିଜୀ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ମହାଦେବ ଦେଶାଇଙ୍କର ମୂର୍ତ୍ତିଗୁଡ଼ିକୁ ମାପିଲେ ଏବଂ ବଙ୍ଗପ୍ରଦେଶ ଆଡ଼କୁ ଚାଲିଲେ । ଗୁରୁଦେବ ରବୀନ୍ଦ୍ରନାଥ, ସୁଭାଷ ଚନ୍ଦ୍ର ବୋଷ, ରାଜା ରାମମୋହନ ରାୟ ଆଦିଙ୍କୁ ବି ଦେଖିଲେ, ମାପ କରି ପୁଣି ବିହାର ଆଡ଼କୁ ମୁହାଁଇଲେ । ଚନ୍ଦ୍ରଶେଖର ଆଜାଦ୍, ମୋତିଲାଲ ନେହେରୁ, ମଦନମୋହନ ମାଲବ୍ୟଙ୍କ ମୂର୍ତ୍ତି ପାଖକୁ ଗଲେ, ଚିନ୍ତାଗ୍ରସ୍ତ ଅବସ୍ଥାରେ ମାଡ୍ରାସରେ ବି ପହଞ୍ଚିଲେ । ସତ୍ୟ ମୂର୍ତ୍ତିଙ୍କୁ ଦେଖିଲେ । ମହୀଶୂର, କେରଳ ଆଦି ସବୁ ପ୍ରଦେଶ ବୁଲି ବୁଲି ପଞ୍ଜାବ ପହଞ୍ଚିଲେ । ଲାଲା ଲାଜପତ ରାୟ ଓ ଭଗତସିଂହଙ୍କ ମୂର୍ତ୍ତି ସହ ସାମନା ବି ହେଲେ । ଶେଷରେ ଦିଲ୍ଲୀ ପହଞ୍ଚି ନିଜର ଅସହାୟତା ଜଣାଇଲେ । ''ସମଗ୍ର ଭାରତବର୍ଷର ମୂର୍ତ୍ତିମାନଙ୍କଠାରେ ପରିକ୍ରମା କରିଆସିଲି, ସମସ୍ତଙ୍କ ନାକର ମାପ ବି ନେଲି କିନ୍ତୁ... ଜର୍ଜ ପଞ୍ଚମଙ୍କର ନାକଠାରୁ ସବୁ ବଡ଼ ଲାଗିଲା... ।

ସମସ୍ତେ ଶୁଣି ହତାଶ ହେଲେ ଏବଂ ଦ୍ୱନ୍ଦ୍ୱରେ ପଡ଼ିଲେ । କାରିଗର ଧୈର୍ଯ୍ୟଧରି ପୂର୍ବକ ପୁଣି କହିଲେ- ''ଶୁଣିଥିଲି ବିହାର ସେକ୍ରେଟାରୀଏଟ୍ ସାମ୍ନାରେ ବୟାଳିଶ ମସିହାରେ ଶହୀଦ ହୋଇଥିବା ତିନିଜଣ ପିଲାଙ୍କର ପ୍ରତିମୂର୍ତ୍ତି ଅଛି..., ପ୍ରାୟ ପିଲାଙ୍କର ନାକ ଫିଟ୍ ହୋଇଯାଇପାରେ... ! ଏହା ଭାବି ସେଠାରେ ପହଞ୍ଚିଲି... କିନ୍ତୁ ଏହି ତିନିଜଣଙ୍କର ନାକ ବି ତାଙ୍କ ଠାରୁ ବଡ଼ । କୁହନ୍ତୁ ମୁଁ ଏବେ କ'ଣ କରିବି ।

...ରାଜଧାନୀରେ ପ୍ରସ୍ତୁତି ଖୁବ୍ ଜୋର୍‌ସୋର୍‌ରେ ଚାଲିଥିଲା ପଞ୍ଚମ ଜର୍ଜଙ୍କର ମୂର୍ତ୍ତିକୁ ଘସିମାଜି ଗାଧୋଇ ଦିଆଯାଇଥିଲା । ରଙ୍ଗ ଲଗାଯାଥିଲା କିନ୍ତୁ ନାକ ନଥିଲା ।

କଥା ପୁଣି ବଡ଼ ସାହେବମାନଙ୍କ ପାଖରେ ପହଞ୍ଚିଲା । ଖୁବ୍ ବ୍ୟସ୍ତତା ପ୍ରକାଶ ପାଇଲା । ଯଦି ପଞ୍ଚମ ଜର୍ଜଙ୍କର ନାକ ଲାଗିବନି, ତେବେ ରାଣୀଙ୍କୁ ସ୍ୱାଗତ କରିବାର ମାନେ କ'ଣ ? ଏହା ତ ନିଜ ନାକ କାଟିଲା ଭଳି କଥା ହେଲା ।

କିନ୍ତୁ ମୂର୍ତ୍ତିକାର ଥିଲେ ଟଙ୍କାର ଉପାସକ । ଅର୍ଥାତ୍ ସେ ହାର୍ ମାନିବାକୁ ଚାହୁଁନଥିଲେ । ଗୋଟେ ଆଶ୍ଚର୍ଯ୍ୟ ପ୍ରକାରର ଯୋଜନା ତାଙ୍କ ମନକୁ ଆସିଥିଲା, ତେଣୁ ସେ ପ୍ରଥମ ସର୍ତ୍ତ ବଖାଣିଲେ । ଯେଉଁ ପ୍ରକୋଷ୍ଠରେ କମିଟି ବସିଥିଲା ତାର ଦୁଆର ପୁଣି ବନ୍ଦ ହେଲା ଏବଂ ମୂର୍ତ୍ତିକାର ତାଙ୍କର ନୂଆ ଯୋଜନା ଶୁଣାଇଲେ- 'ଯେହେତୁ ନାକ ଲାଗିବା ଏକାନ୍ତ ଜରୁରୀ, ସେଥିପାଇଁ ମୋର କହିବା କଥା ହେଲା ଚାଳିଶି କୋଟିଙ୍କ ମଧ୍ୟରୁ କାହାରି ଜଣଙ୍କର ନାକ କାଟି ଲଗାଇଦେବା ।'

କଥା ସରିବା ମାତ୍ରେ ନୀରବତା ବିରାଜମାନ କଲା । କିଛି ସମୟ ନୀରବତା ପରେ

ସଭାପତି ସମସ୍ତଙ୍କ ଆଡ଼କୁ ଦେଖିଲେ । ସମସ୍ତଙ୍କୁ ବିବ୍ରତ ହେବାର ଦେଖି ମୂର୍ତ୍ତିକାର ଟିକେ ସହଜ ହୋଇଯାଇ କହିଲେ- 'ଆପଣ କାହିଁକି ବ୍ୟସ୍ତ ହେଉଛନ୍ତି ? ଏ କାମ ମୋ ଉପରେ ଛାଡ଼ି ଦିଅନ୍ତୁ... ନାକ ଖୋଜିବା ଦାୟିତ୍ୱ ମୋର । ଆପଣଙ୍କର ଅନୁମତି କେବଳ ଦରକାର ।'

ସମସ୍ତେ ଚୁପ୍‌ଚାପ୍ କାନରେ କୁହାକୁହି ହେଲେ ଓ ମୂର୍ତ୍ତିଶିଳ୍ପୀଙ୍କୁ ଅନୁମତି ଦିଆଗଲା ।

ଖବରକାଗଜରେ ବାହାରିଲା ଯେ ନାକ ସମସ୍ୟାର ସମାଧାନ ହୋଇଯାଇଛି ଏବଂ ରାଜପଥ ଉପରେ ଇଣ୍ଡିଆ ଗେଟ୍ ପାଖରେ ଥିବା ପଞ୍ଚମ ଜର୍ଜଙ୍କ ମୂର୍ତ୍ତିରେ ନାକ ଲାଗୁଅଛି ।

ନାକ ଲାଗିବା ପାଇଁ ପୁଣି ସଶସ୍ତ୍ର ପ୍ରହରୀ ମୁତୟନ ହେଲେ । ମୂର୍ତ୍ତିର ଆଖପାଖରେ ଥିବା ପୋଖରୀ ଶୁଖାଇ ସଫା କରାଗଲା । ସେଥିରୁ ପଙ୍କ କଢ଼ାଗଲା ଏବଂ ସେଥିରେ ତାଜା ପାଣି ଭର୍ତ୍ତି କରାଗଲା, କାରଣ ଯେଉଁ ଜୀବନ୍ତ ନାକ ଲାଗିବ, ଯେମିତି ଶୁଖି ନଯାଏ । ଏ କଥାର ଖବର ଅନ୍ୟମାନଙ୍କୁ ଜଣା ନଥିଲା । ଏସବୁ ପ୍ରସ୍ତୁତି ଭିତରେ ଭିତରେ ହିଁ ଚାଲିଥିଲା । ରାଣୀଙ୍କର ଆସିବା ଦିନ ବି ପାଖେଇ ଆସୁଥିଲା । ମୂର୍ତ୍ତିକାର ନିଜେ କହିଥିବା ସମସ୍ୟାର ସମାଧାନକୁ ନେଇ ବ୍ୟତିବ୍ୟସ୍ତ ଥିଲା । ଜୀବନ୍ତ ନାକ ଆଣିବା ପାଇଁ କମିଟିବାଲାଙ୍କୁ କିଛି ଆହୁରି ସାହାଯ୍ୟ ମାଗିଲା । ତାହା ମଧ୍ୟ ତାକୁ ଦିଆଗଲା । କିନ୍ତୁ ଏହି ପ୍ରତିଶ୍ରୁତି ଦେଉଥିଲା ଯେ, ଯେମିତି ବି ହେଉ ସେଦିନ ନାକ ଲାଗିଯାଇଥିବ ।

ଏବଂ ସେଦିନ ଆସିଲା । ଜର୍ଜ ପଞ୍ଚମଙ୍କର ନାକ ଲାଗିଗଲା ।

ସବୁ ସମ୍ବାଦପତ୍ରରେ ଖବର ଛପାଗଲା ଯେ ପଞ୍ଚମ ଜର୍ଜଙ୍କର ଜୀବନ୍ତ ନାକ ଲାଗିଯାଇଛି... କି ଏମିତି ନାକ ଯାହା ପଥର ଭଳି ଜଣାପଡୁନି ।

କିନ୍ତୁ ଖବରକାଗଜରେ ଗୋଟେ କଥା ଦେଖିବାର ହିଁ ଥିଲା । ସେଦିନ ଦେଶରେ କେଉଁଠି କୌଣସି ଉଦ୍‌ଘାଟନ ଉତ୍ସବର ଖବର ନଥିଲା । କେହି କୌଣସି ଫିତା କାଟି ନଥିଲେ । କୌଣସି ସାର୍ବଜନୀନ ସଭା ମଧ୍ୟ ହୋଇନଥିଲା । କୌଣସି ମାନପତ୍ର ଭେଟିଦେବାର ବେଳା ବି ନଥିଲା । କୌଣସି ବିମାନଘାଟି କିମ୍ବା ଷ୍ଟେସନ୍‌ରେ ସ୍ୱାଗତ ସମାରୋହ ହୋଇନଥିଲା । କାହାରି ତାଜା ଫଟୋ ବି ଛପାଯାଇ ନଥିଲା ।

ସବୁ ଖବରକାଗଜ ଥିଲା ଫାଙ୍କା ଫାଙ୍କା ।

ଜଣା ନାହିଁ ଏମିତି କାହିଁକି ହେଲା ।

ନାକ କେବଳ ଗୋଟିଏ ଦରକାର ଥିଲା ଏବଂ ଏହା ମୂର୍ତ୍ତିପାଇଁ ।

# ନାଚ

ସମସ୍ତେ କାହାଣୀଟିକୁ ଶୁଣିବା ପାଇଁ ବେଶ୍ ଉତ୍ସୁକଥିଲେ, କାହାଣୀଟି ଯେ ଖୁବ୍ ମଜାଦାର ହେବ ଏକଥା ସମସ୍ତେ ଆଶା କରୁଥିଲେ । ତା'ପରେ ଢୋକେ ଚାହାପିଇ ସେ ଆରମ୍ଭ କଲେ, 'ଧରିନିଆଯାଉ କି ତା ନାଆଁ ଚନ୍ଦ୍ରକାନ୍ତ ଏବଂ ପ୍ରେମିକାର ନାମ ଲିଲି ।...' ଏମିତି ହେଲା ଯେ ''ଲଭ୍ ଏଟ୍ ଫାର୍ଷ୍ଟ ସାଇଟ୍'' ବୋଲି ଘଟଣାଟେ ଘଟିଗଲା । ଚନ୍ଦ୍ରକାନ୍ତ ନିଜ ବ୍ୟବସାୟ ନୂଆକରି ଆରମ୍ଭ କରିଥାଏ । ଜୀବନରେ ପ୍ରଥମ କରି କିଛି ଟଙ୍କା ପଇସା ବି ରୋଜଗାର ହେଇଥାଏ । ହାତକୁ ଦି ପଇସା ଆସିବାରୁ ସେ ପ୍ରଥମେ ଏକ ଷ୍ଟେନୋ ରଖିବା କଥା ବି ଚିନ୍ତା କରିଥାଏ । କାରଣ ଏହାଦ୍ୱାରା କୁଆଡ଼େ ବେପାରରେ ଇଜ୍ଜତ୍ ବଢ଼ିଥାଏ । ଖୁବ୍ ବଢ଼େଇ ବଢ଼େଇ ସେ ଖବରକାଗଜରେ ବିଜ୍ଞାପନ ଦେଲା ଏବଂ ତା' ପର

ଦିନ କେହି ନା କେହି ଆସିବେ ବୋଲି ରାସ୍ତାକୁ ଚାହିଁ ରହିଲା ।

''ଭାଇ, ଅସଲ କାହାଣୀଟା କୁହ ।'' ଶ୍ରୋତା ଜଣେ ମଝିରେ କହିଲା ।

ଆଉ ଢୋକେ ଚାହା ପିଇନେଇ ସେ କହଲା, ''ହଁ, ଆପଣ ତ ନିଶ୍ଚିତ ବୁଝିପାରୁଥିବେ ଯେ ଏ କାହାଣୀ ଷ୍ଟେନୋ ରଖିବା କଥାରୁ ହିଁ ଆରମ୍ଭ । ଠିକ୍‌ଅଛି, ଅସଲ କଥାକୁ ମୁଁ ବଖାଣୁଛି... ପ୍ରତିଟି ମୁହୂର୍ତ୍ତକୁ ମନଭରି ଶୁଣିବାକୁ ଚେଷ୍ଟାକର ।''

''ମିସ୍ ଲିଲିର ବାହାଘର ଠିକ୍ ହୋଇସାରିଥିଲା''... ସେ କହିଆସୁଥିଲା ବେଳେ ଆଉଜଣେ ମଝିରେ ପଶି କହିଲେ, ''କାହା ସଙ୍ଗରେ- ଚନ୍ଦ୍ରକାନ୍ତ ସାଥିରେ ?''

''ନା, ଅନ୍ୟ ଜଣକ ସହ ! ଧୈର୍ଯ୍ୟର ସହ ଶୁଣ, କାରଣ ଏ କାହାଣୀ ଜଣେ ନିରାଶ କିନ୍ତୁ ଆଦର୍ଶବାଦୀ ପ୍ରେମିକ ସମ୍ବନ୍ଧରେ । ମିସ୍ ଲିଲି ଚନ୍ଦ୍ରକାନ୍ତଙ୍କୁ ପ୍ରେମ କରୁଥିଲା, କିନ୍ତୁ ବିବାହ ଅନ୍ୟଜଣଙ୍କୁ କରିବାକୁ ଯାଉଥିଲା ଏବଂ ଚନ୍ଦ୍ରକାନ୍ତ ମଧ୍ୟ ଏହା ସ୍ୱୀକାର କରିନେଇଥିଲା ।''

ଘଟଣାଟି ଏଇଭଳି ଥିଲା ଯେ ଚନ୍ଦ୍ରକାନ୍ତର ଅଫିସ୍‌ରେ ମିସ୍ ଲିଲି ଷ୍ଟେନୋ ଭାବେ କାମ କରୁଥିଲା ଏବଂ ଚନ୍ଦ୍ରକାନ୍ତ ତାକୁ ଦେଖିଲେ ଖୁବ୍ ଆନନ୍ଦିତ ହେଉଥିଲା । ସାଙ୍ଗ ସାଥିମାନଙ୍କୁ ନିଜ ଅଫିସକୁ ଏଇଥିପାଇଁ ଡାକୁଥିଲା ଯେ ସେମାନେ ଅଫିସ୍‌କୁ ଆସି ଚନ୍ଦ୍ରକାନ୍ତର ସୌଭାଗ୍ୟ ଦେଖନ୍ତୁ । ସେ ଯାହାହେଉ, ସେ କଥା ଛାଡ଼... ମିସ୍ ଲିଲିର ବିବାହ ବା ଆମକୁ ମିଳବ କ'ଣ, ସେ ବାହାହେଉ କି ନ ହେଉ ଆମର ସେଥିରେ କ'ଣ ଅଛି, ମାତ୍ର ଗଳ୍ପଟି ଏଇମିତି ଆଗେଇବାରେ ଲାଗିଛି... ।''

ଏହା ବଡ଼ଦିନ ସମୟର କଥା । ମିସ୍ ଲିଲିର ଭାବୀ ଶ୍ୱଶୁରଘରର ଲୋକମାନେ ବଡ଼ଦିନ ପାଳିବାକୁ ତାଙ୍କ ଘରକୁ ଆସିଥିଲେ । ଘରଟି ସାନ ଥିଲା, ତେଣୁ ଯେଉଁ ଖାନ୍‌ଦାନି ପ୍ରଦର୍ଶନ କରବାକୁ ଲିଲି ଚାହିଁଥିଲା ତାହା ସମ୍ଭବ ନହେବାରୁ ପାଖରେ ଗୋଟିଏ ଖାଲିଘର ସେ ନେଇଥିଲା । ବଡ଼ଦିନ ଉତ୍ସବ ପାଳନର ବନ୍ଦୋବସ୍ତ ସେଇଠି ହୋଇଥିଲା । ସେ ଘରକୁ ସଫା ସୁତୁରା କରାଯାଇଥିଲା । ଘରକୁ ପୂରା ସାଜସଜ୍ଜା କରାଯାଇଥିଲା । ମିସ୍ ଲିଲି ଓ ଶ୍ୱଶୁର ଘରର ଲୋକେ ଖୁବ୍ ଥାଟବାଟରେ ସେଇ ଘରେ କିଛିଦିନ ଆନନ୍ଦରେ ରହିଥିଲେ ।

ବଡ଼ଦିନ ଆଉ ଅଳ୍ପଦିନ ଥିଲା । ଚନ୍ଦ୍ରକାନ୍ତ ଆୟୋଜନର ସବୁଭାର ନେଇଥିଲା । ଗୋଟିଏ ରୁମ୍‌ରେ ପିଆପିଇ ଏବଂ ନାଚଗୀତର ବନ୍ଦୋବସ୍ତ କରାଯାଇଥିଲା । ତା' ପାଖ ରୁମ୍‌ରେ 'ଖ୍ରୀଷ୍ଟମାସ୍ ଟ୍ରି' ତିଆରି ହୋଇଥିଲା । ଖ୍ରୀଷ୍ଟମାସ୍ ଟ୍ରି ପାଇଁ ଡାଳ ପଠାଇଥିଲା ଚନ୍ଦ୍ରକାନ୍ତ । ସେ ମିସ୍ ଲିଲିଙ୍କର ଅତିଥିମାନଙ୍କୁ ଆପ୍ୟାୟିତ କରିବାରେ ବ୍ୟସ୍ତଥିଲା । ତା' ଉପରେ ଏକ ନିଶା ହିଁ ସବାର୍ ହୋଇଯାଇଥିଲା... ପ୍ରେମରେ ସେ ଶହୀଦ୍ ହେବାକୁ ଚାହୁଁଥିଲା । ଅତିଥିମାନଙ୍କର ଘରର ସାଜସଜ୍ଜା ଓ ଜିନିଷ ପତ୍ରର ବନ୍ଦୋବସ୍ତ ଏମିତି ଚନ୍ଦ୍ରକାନ୍ତ କରିଥିଲା ଯେ ମିସ୍ ଲିଲି ବି ଆଶ୍ଚର୍ଯ୍ୟାନ୍ୱିତ ହୋଇ ଯାଇଥିଲା । କୋଠରୀ ମାନଙ୍କରେ କ୍ରେପ୍ ପେପରରେ

ତିଆରି ଇନ୍ଦ୍ରଧନୁର ଭ୍ରମ ସୃଷ୍ଟି କରୁଥିବା ପଟି ଲାଗିଥିଲା । ବିଭିନ୍ନ ସ୍ଥାନରେ ରଙ୍ଗ ବେରଙ୍ଗର ଫୁଲଦାନୀ ଓ ଆସ୍‌ଟ୍ରେ ଛୋଟ ଛୋଟ ଡିଜାଇନ୍‌ବାଲା ଚଉକି ଉପରେ ସଜା ହୋଥିଲା । ଭଡ଼ାରେ ନିଆଯାଇଥିବା ମଡ଼ର୍ଣ୍ଣ ଫର୍ଣ୍ଣିଚର୍‌ରେ କୁସନ, ଝର୍କା କବାଟରେ ଝୀନ ପର୍ଦ୍ଦା ଓ ଆଲମାରୀରେ ବୋତଲ ବନ୍ଦ ହୋଇ ରହିଥିଲା । ଶେଷରେ ବଡ଼ଦିନ ଆସିଲା ଏବଂ ସେଦିନ ଗୀତ ନାଚର ପ୍ରୋଗ୍ରାମ ଥିଲା । ଲିଲି ତଥା ଅନ୍ୟମାନେ ସମସ୍ତେ ସେଇଠି ଉପସ୍ଥିତ ଥିଲେ । ଏଥିରେ ସାମିଲ୍ ହେବାକୁ ଚନ୍ଦ୍ରକାନ୍ତର ମଧ ଠିକ୍ ସମୟରେ ଆସିବାର ଥିଲା । ଏ ସମସ୍ତ କାମ ତ ଚନ୍ଦ୍ରକାନ୍ତ କରିସାରିଥିଲା, କିନ୍ତୁ ଯେତେବେଳେ ସେ ଭାବୁଥିଲା ଯେ ଲିଲି ପାଖରୁ ସେ ଦୂରେଇଯିବ, ତା ହୃଦୟ ରୁନ୍ଧି ଯାଉଥିଲା, ତଥାପି ଏସବୁ ସେ ନିଜେ ହିଁ କରିଥିଲା... କାରଣ ଲିଲିକୁ ସେ ଆଦର୍ଶବାଦୀ ପ୍ରେମିକ ଷ୍ଟାଇଲ୍‌ରେ ହିଁ କହିଥିଲା ‘‘ମୋତେ କେବଳ ତମେ ଖୁସି ରହିବା ହିଁ ଦରକାର... ଆଉ କିଛି ଚାହେଁନା ଲିଲି... ।’’

ସନ୍ଧ୍ୟା ନଇଁ ଆସୁଥିଲା । ଚନ୍ଦ୍ରକାନ୍ତ ନିଜ ଘରେ ବସି ବସି ଦ୍ୱନ୍ଦଗ୍ରସ୍ତ ଭାବେ ଚିନ୍ତା କରୁଥିଲା ଯେ ସମସ୍ତେ ତାକୁ ସେଠି ଅପେକ୍ଷା କରୁଥିବେ... ମନ ଭିତରେ ଭୟ ଓ ଚିନ୍ତାଗ୍ରସ୍ତତା ତାକୁ ବିଚଳିତ କରିଦେଇଥିଲା । ଥରଟିଏ ଇଚ୍ଛା ହେଉଥିଲା ଯେ ସେଠାକୁ ଯିବା ଉଚିତ୍ ହେବନି । ପୁଣି ପରମୁହୂର୍ତ୍ତରେ ଲିଲିକୁ ଦେଖିବ ଓ ତା’ ସହିତ କିଛି ସମୟ ବିତାଇବାର ଏକ ଲାଳସା ତାକୁ ଅସ୍ଥିର କରି ଦେଉଥିଲା ।

ଶେଷରେ ଚନ୍ଦ୍ରକାନ୍ତ ଲୁଙ୍ଗି ବଦଳେଇ ପ୍ୟାଣ୍ଟ ପିନ୍ଧିଲା, ସାର୍ଟ ପିନ୍ଧିସାରି ଟାଇ ବାନ୍ଧିବାକୁ ଯେମତି ସେ ଦର୍ପଣ ସାମ୍‌ନାରେ ଛିଡ଼ା ହେଲା ତା’ ବୟସ ବିଷୟରେ ଚିନ୍ତା ତା ମନକୁ ଘାରିଲା । ତା ମନରେ ତା’ ବନ୍ଧୁଙ୍କ କଥା ବାରମ୍ବାର ପ୍ରତିଧ୍ୱନିତ ହେଲା, ‘‘ଚନ୍ଦ୍ରକାନ୍ତ, ଏସବୁ ତାମ୍‌ସା ବୟସ ସହ ଖାପଖୁଆଇ କରାଯାଏ... ତୁମେ କେଉଁ ଚକ୍ରବ୍ୟୁହରେ ଫସିଛ ।’’

କନ୍ତୁ ଚନ୍ଦ୍ରକାନ୍ତ କହିଥିଲା, ‘‘ବନ୍ଧୁ ପ୍ରେମ ମାମଲାରେ ବୟସ ଏକ ପ୍ରତିବନ୍ଧକ ନୁହଁ... ସ୍ତ୍ରୀଲୋକମାନେ ବୟସକୁ ଦେଖନ୍ତିନି... ଏ ହେଉଛି ଏକ ନିଆଁ ଯାହାକୁ ଲଗାଇଲେ ଲାଗେନା ଆଉ ଲିଭାଇଲେ ଲିଭେନା... ।’’

ଗାଲିବଙ୍କ ରଚିତ ଏ ଶାୟରୀ ମନେପକାଇ ସେ ବେଶ୍ ଆଶ୍ୱସ୍ତ ହେଲା । ଯଦି ଏ ଗୀତ ଲେଖାହୋଇ ନଥାନ୍ତା, ତେବେ ଚନ୍ଦ୍ରକାନ୍ତ ହୁଏତ ଅନ୍ୟକିଛି ନିଷ୍ପତ୍ତି କରିଥାଆନ୍ତା । ଶେଷରେ ସେ ଟାଇ ବାନ୍ଧିଲା ଏବଂ ଜୋତା ପିନ୍ଧିଲା ତ ରୁମାଲରେ ସେଣ୍ଟ କିଛି ବୁନ୍ଦା ଢାଳି ଆଗକୁ ଚାଲିଲା ।

ଲିଲିର ଘର ଆଡ଼କୁ ଚାଲିଲାବେଳେ ତା ମନରେ ବହୁତ କଥା ଉଙ୍କି ମାରୁଥିଲା । ଯେତେବଳେ ପ୍ରଥମ ଥର ମିସ୍ ଲିଲି ଚାକିରି କରିବାକୁ ତା ଅଫିସ୍‌କୁ ଆସିଥିଲା, ସେ କୁଞ୍ଚିକୁଞ୍ଚିକା ପର୍ଦ୍ଦାଭଳି ଝୀନ ସ୍କର୍ଟଟିଏ ପିନ୍ଧିଥିଲା । ଭ୍ୟାନିଟି ବାଗ୍‌ର ରଙ୍ଗ ଖୁବ୍ ଫିକା ଲାଗୁଥିଲା ଏବଂ ସ୍ୟାଣ୍ଡଲ ଉପରେ ଉଚ୍ଚ ଗୋଇଠି ତରଭୁଜ ଭଳି ଧୂସର ଫିକା ରଙ୍ଗ

ଦେଖାଯାଉଥିଲା । ପୁରୁଣା ସ୍ୟାଣ୍ଡଲରେ ଫିତାବନ୍ଧା ଯାଇଥିଲା ଗୋଇଠିରେ । ତା'ର ଓଠରେ ଲିପ୍‌ଷ୍ଟିକ୍ ଓ ଲେପ ନଥିଲା କିମ୍ବା ବେହେରାରେ ରୋଜ୍ ପାଉଡ଼ରର ପ୍ରଲେପ ନଥିଲା । ଅଙ୍ଗୁଳିଗୁଡ଼ିକ ଲମ୍ବା ଲମ୍ବା କ୍ୟାମେରାର ଷ୍ଟାଣ୍ଡଭଳି ଥିଲା ଏବଂ ଶୁଖିଲା ଗହମ ରଙ୍ଗର ହାତଗୋଡ଼ । ପ୍ରଥମ ଦୃଷ୍ଟିରେ ଚନ୍ଦ୍ରକାନ୍ତ ଯଦିଓ ଏତେଟା ପ୍ରଭାବିତ ହୋଇନଥିଲା, ମିସ୍ ଲିଲିର ଚାହାଣୀରେ ଯେଉଁ ସୁସୁପ୍ତ ପ୍ରେମର ସ୍ପର୍ଶ ସେ ପାଇଥିଲା, ତାହାକୁ ଏଡ଼ାଇଦେବା ତା ପାଇଁ ଥିଲା ଖୁବ୍ ମୁସ୍କିଲ୍... ।

ଏବଂ ସେ ସେତେବେଳେ ମନକୁ ମନ କହିଥିଲା, ''ଏ ଝିଅ ନିଶ୍ଚିତ ମୋ ଜୀବନରେ ଆସିବ...'' ଆଉ ସେଦିନ ସାରା ରାତି ତାର ସେହି ପ୍ରେମଭରା କଟାକ୍ଷ ବିଚଳିତ କରି ତାକୁ ଶୋଇବାକୁ ଦେଇ ନଥିଲା ।

ତା' ପରଦିନ ଠାରୁ ମିସ୍ ଲିଲି କାମକୁ ଆସିଥିଲା । ତାର ବସିବାର ବନ୍ଦୋବସ୍ତ ସେ ନିଜ ପ୍ରକୋଷ୍ଠରେ ହିଁ କରିଥିଲା, ଆଉ ପ୍ରଥମ ଦିନରେ ହିଁ ଚନ୍ଦ୍ରକାନ୍ତ ଲିଲିର ଷ୍ଟାଇଲ ଓ ସ୍ଫୁର୍ତ୍ତିର ଶିକାର ହୋଇଯାଇଥିଲା । ସେ ଖୁବ୍ ସ୍ଫୁର୍ତ୍ତିର ସହ ଡିକ୍‌ଟେସନ୍ ନେଉଥିଲା ଏବଂ ଠିକ୍ ଠିକ୍ ଟାଇପ୍ କରି ସାମ୍ନାରେ ରଖିଦେଉଥିଲା । ଥକି ଯାଉଥିବା ନିଜ ଅଙ୍ଗୁଳିଗୁଡ଼ିକୁ ଅଙ୍ଗୁଳି ଭିତରେ ପୂରାଇ ସେ ଟାଣୁଥିଲା ଓ ବାଙ୍କ ନୟନରେ ଚନ୍ଦ୍ରକାନ୍ତ ଆଡ଼କୁ ଚାହିଁ ଧୀରେ ଧୀରେ ହସି ତଳକୁ ମୁହଁ ପୋତି ଦେଉଥିଲା ।

କିଛିଦିନ ଭିତରେ ହିଁ ଚନ୍ଦ୍ରକାନ୍ତ ଅନୁଭବ କଲା ଯେ ତାର ଡିକ୍ଟେସନ୍ ନେବା ଏତେ ଜରୁରୀ ନଥିଲା କିନ୍ତୁ ଲିଲିର ସ୍ମିତହାସ୍ୟ ହିଁ ଜରୁରୀ ଥିଲା । ଆଉ ଲିଲି ଯେତେବେଳେ ପ୍ରେମପୂର୍ବକ ହସୁଥିଲା ଏବଂ ଥକି ଯାଇଥିବା ଅଙ୍ଗୁଳିଗୁଡ଼ିକୁ ଏପଟ ସେପଟ କରୁଥିଲା, ଚନ୍ଦ୍ରକାନ୍ତ ବେଲ୍ ବଜାଇ ଚାହାପାଇଁ ଅର୍ଡର ଦେଉଥିଲା । ନିଜେ ପିଇବା ପୂର୍ବରୁ ପ୍ରଥମେ ଲିଲି ସାମନାରେ ଚାହା ପେଶ୍ କରୁଥିଲା ।

ଧୀରେ ଧୀରେ ଲିଲି ପୂରା ଅଫିସ୍ କଥା ବୁଝିବାରେ ଲାଗିଲା । ସେ ଅଫିସ୍‌ର ଚେହେରା ବଦଳେଇ ଦେଲା । ସେ ନିଜେ ଯାଇ ଚନ୍ଦ୍ରକାନ୍ତର ଚ୍ୟାମ୍ବର ପାଇଁ ଅଫିସ୍ ପଇସାରେ ସୁନ୍ଦର ମଖମଲି କାର୍ପେଟ ଆଣିଲା । ତା'ର ଟେବୁଲ ବଦଳାଇଦେଲା । ଗୋଟେ ନୂଆ ଟେବୁଲ୍ ଲ୍ୟାମ୍ପ ଆଣି ତାକୁ ଟେବୁଲ୍‌ରେ ସଜାଇକରି ରଖିଲା । ଏହା ସଙ୍ଗେ ସଙ୍ଗେ ଫୁଲଦାନୀ ଓ ପରିତ୍ୟକ୍ତ କାଗଜ ବାସ୍କେଟ ମଗାଇ ରଖିଲା... ଚନ୍ଦ୍ରକାନ୍ତର ପ୍ରକୋଷ୍ଠ ପାଇଁ ପରଦାର ରଙ୍ଗ ଏବଂ ଡିଜାଇନ୍ ସେ ପସନ୍ଦ କରିଥିଲା... ଏବଂ ଯେତେବେଳେ ସେହି ଦାମିକା ପର୍ଦ୍ଦାକୁ ଆଣି ଚ୍ୟାମ୍ବରରେ ଲଗାଇଦେଇଥିଲା, ଚନ୍ଦ୍ରକାନ୍ତର ମନ ଖୁସିରେ ଝୁମି ଯାଉଥିଲା । ଅଫିସ୍‌ର ବେଶ୍ କିଛି ଟଙ୍କା ଖର୍ଚ୍ଚ ହୋଇଥିଲା ।... କିନ୍ତୁ ଯେଉଁ ଚାକଚକ୍ୟ ଆସିଥିଲା ତାହା ଚନ୍ଦ୍ରକାନ୍ତର ଥିଲା କଳ୍ପନାର ବାହାରେ । ଧୀରେ ଧୀରେ ଅଫିସର ସବୁ କଥାରେ ପରିବର୍ତ୍ତନ ଆସିଥିଲା । ଅଫିସ୍‌ର ସବୁ ଜିନିଷ ଚକ୍‌ଚାକ୍ ଦେଖାଯିବା ସଙ୍ଗେ ସଙ୍ଗେ

ଲିଲିର ଓଠରେ ବି ଲାଲିମା ଖେଳି ଯାଇଥିଲା । ପାଦରେ ସୁନ୍ଦର ନୂଆ ଜୋତା, ରେଶମୀ ରଙ୍ଗର ସ୍କାର୍ଫ ଏବଂ କମରରେ ବେଲ୍ଟ ବାନ୍ଧି ଲିଲିର ଚେହେରା ଏମିତି ବଦଳିଯାଇଥିଲା ଯେ ସ୍ୱୟଂ ଚନ୍ଦ୍ରକାନ୍ତକୁ ଜାମା ପ୍ୟାଣ୍ଟ ପିନ୍ଧି ଆସିବାକୁ ଲଜ୍ଜା ଲାଗୁଥିଲା । ଧୀରେ ଧୀରେ ଚନ୍ଦ୍ରକାନ୍ତର ଚେହେରାରେ ବି ପରିବର୍ତ୍ତନ ଆସିଲା..

ଆଉ ଅଫିସ୍ ଟାଇମ୍ ପରେ ଚନ୍ଦ୍ରକାନ୍ତ ଲିଲି ସହ ବାହାରକୁ ବୁଲିଯିବା ଆରମ୍ଭ କରିଥିଲା । ଶେଷରେ ଦିନେ ସନ୍ଧ୍ୟାରେ ଚନ୍ଦ୍ରକାନ୍ତ ଖୁବ୍ ସାହସ ସଂଚୟ କଲା । ପ୍ରଥମ ଥର ପାଇଁ ତାକୁ ଏକାନ୍ତରେ ଭେଟିବାକୁ ଲିଲିକୁ ଏକ ହୋଟେଲ୍‌ରେ ଚାହା ପିଇବାକୁ ଆମନ୍ତ୍ରଣ କଲା । ଲିଲି ଏ ଆମନ୍ତ୍ରଣକୁ ସ୍ୱୀକାର କଲା, କିନ୍ତୁ ଦୁହେଁ ହୋଟେଲ ଭିତରେ ପଶୁ ପଶୁ ଚନ୍ଦ୍ରକାନ୍ତର ସାରାଦେହ ସ୍ୱେଦସିକ୍ତ ହୋଇ ଉଠିଲା । ଯେକୌଣସି ପ୍ରକାରେ ସେ ନିଜକୁ ସମ୍ଭାଳି ନେଇଥିଲା ଏବଂ ଲିଲିକୁ କହିଥିଲା, ''ଲିଲି ଡିଅର, ମୋ ସାଥିରେ ଶାଢ଼ୀ ପିନ୍ଧି ସବୁବେଳେ ଆସ ।''

ଏ କଥା ପଛରେ ଥିବା ରହସ୍ୟକୁ ବୁଝିବି ନ ବୁଝିଲା ପରି ଲିଲି ପଚାରିଲା, ''କାହିଁକି ?''

''ଶାଢ଼ୀ ଭଲଲାଗେ'' କହି ନିଜର ଚତୁରତା ପାଇଁ ଖୁସି ହୋଇଥିଲା ଚନ୍ଦ୍ରକାନ୍ତ । ଲିଲି ଧୀରେ କହିଥିଲା, ''ମୋ ପାଖରେ ମୂଳରୁ ଖଣ୍ଡେ ବି ଶାଢ଼ୀ ନାହିଁ ।''

ଆଉ ତା'ପରଦିନ ଶାଢ଼ୀର ଏକ ବଣ୍ଡଲ୍ ମିସ୍ ଲିଲିର ଘରକୁ ପଠାଇ ଦେଇଥିଲା ଚନ୍ଦ୍ରକାନ୍ତ ।

ତା'ପରଦିନ ଚନ୍ଦ୍ରକାନ୍ତ ତାକୁ ଚିଠି ଡିକ୍ଟେସନ୍ ଦେବାକୁ ଡାକିଥିଲା । ଲିଲି ସେଇ ଶାଢ଼ୀ ପିନ୍ଧି ଆସିଥିଲା ଏବଂ ଖୁବ୍ ସତର୍କତାର ସହ ଡିକ୍ଟେସନ୍ ନେଉଥିଲା । ଚନ୍ଦ୍ରକାନ୍ତ ତାକୁ ମଝିରେ ମଝିରେ ଖାଲି ଦେଖୁଥିଲା ଓ ଡିକ୍ଟେସନ୍ ବାକ୍ୟ ଭୁଲିଯାଉଥିଲା । ଚିଠି ଶେଷ ହେବାପରେ ଚନ୍ଦ୍ରକାନ୍ତ ତାକୁ ପଢ଼ି ଶୁଣାଇବାକୁ କହଲା । ଲିଲି ହସି ହସି ଚନ୍ଦ୍ରକାନ୍ତକୁ ଦେଖିଥିଲା ଏବଂ ସର୍ଟହ୍ୟାଣ୍ଡ କପି ତା ସାମ୍ନାରେ ରଖିବ ବାହାରକୁ ଚାଲି ଯାଇଥିଲା । ଚନ୍ଦ୍ରକାନ୍ତ ଦେଖିଲା, କପିରେ ଚିଠି ନଥିଲା, କେବଳ ପ୍ରେମର ଧାସ ଜ୍ୱଳନ୍ତ ରୂପେ ବାହାରି ଆସୁଥିଲା ।

''ଆଇ ଲଭ୍ ୟୁ ଇନ୍‌ଟେନ୍‌ସ୍‌ଲି ! ଆଇ କ୍ୟାନ୍‌ଟ .... ୱିଦାଉଟ୍ ୟୁ ! ୟୁ ଆର୍ ମାଇଁ ଡ୍ରିମ୍ !'' ଆହୁରି କେତେ କ'ଣ ଜ୍ୱଳନ୍ତ ପ୍ରେମର ଭାଷା ଏଥିରେ ଭରି ରହିଥିଲା ।

ସବୁ କାମଦାମ ବନ୍ଦକରି ସେହିକ୍ଷଣି ଚନ୍ଦ୍ରକାନ୍ତ ଏକ ଦୀର୍ଘ ପ୍ରେମପତ୍ର ଲିଲି ନାଁରେ ଲେଖିଲା ଆଉ ସେହି ନିଶାରେ ସଂପୂର୍ଣ୍ଣ ରୂପେ ବୁଡ଼ି ରହଲା । ସେହିଦିନରୁ ପ୍ରତିଦିନ ଗୋଟିଏ ଲେଖାଏଁ ପ୍ରେମପତ୍ର ଲିଲିର ପର୍ସ ଭିତରେ ପୂରାଇ ଦେଉଥିଲା ଏବଂ ପ୍ରତିଦିନ ସକାଳେ ତାର ଉତ୍ତରର ପ୍ରତୀକ୍ଷାରେ ରହୁଥିଲା । ଚିଠି ଗୁଡ଼ିକର ଜବାବ୍ ପ୍ରତିଦିନ ସୁନ୍ଦର

ହସଟିଏ ସହ ହାତପାହାନ୍ତାରେ ମିଳିଯାଉଥିଲା ।

'ଖ୍ରୀଷ୍ଟମାସ ଟ୍ରି' ଉପହାରରେ ଭରିହୋଇ ଯାଉଥିଲା । ପାଦ୍ରୀ ଗୋଟେ ଖେଳନା ଛିଣ୍ଡାଇନେଇ ଲିଲିର ଛୋଟଭାଇ ହାତରେ ଧରେଇଦେଲେ । ତାଳିମାଡ଼ ହେଲା । ପିଲାମାନଙ୍କୁ ଉପହାର ଦେଇସାରିବା ପରେ ବଡ଼ମାନଙ୍କ ପାଳି ଆସିଲା । ଚନ୍ଦ୍ରକାନ୍ତର ନଜର ଥିଲା ସେଠି ଝୁଲୁଥିବା ଏକ ନୀଳ ଲଫାପା ଉପରେ । ତା' ଉପରେ କାହା ନାମ ଲେଖାଥିଲା ତାହା ଠିକ୍ ଦେଖାଯାଉ ନଥିଲା । କିନ୍ତୁ ମନ କହୁଥିଲା, ସେ ଚିଠି ତା ପାଇଁ ହିଁ ଅଭିପ୍ରେତ... ଶେଷରେ ତାକୁ ସେଇ ନୀଳ ଲଫାପା ମିଳିବାର ଥିଲା, ଯାହାକୁ ସେ ପ୍ରତିଦିନ ଲିଲିର ପର୍ସ ଭିତରେ ଖୋଜୁଥିଲା । ଶେଷରେ ପାଦ୍ରୀ ସେଇ ନୀଳ ଲଫାପାଟିକୁ ଛିଣ୍ଡାଇଦେଇ ନାମ ପଢ଼ି ଚନ୍ଦ୍ରକାନ୍ତ ହାତକୁ ବଢ଼ାଇଦେଲେ । ତା ଛାତି ଅତି ବ୍ୟସ୍ତତାର ସହ ଧକ୍‌ଧକ୍ ହୋଇ ଉଠିଲା... ସେ ଖୁବ୍ ଅସ୍ଥିର ହୋଇଉଠିଲା । ସମସ୍ତେ ନିଜ ନିଜ ଉପହାରକୁ ନେଇ ପ୍ରଶଂସା ଓ ଆଲୋଚନା କରିବାରେ ମସଗୁଲ୍ ଥିଲେ । ତା ଭିତରୁ ଚନ୍ଦ୍ରକାନ୍ତ ଚୁପ୍‌କରି ବାହାର ପଟେ ଥିବା ଲନ୍ ନିକଟକୁ ଖସି ଯାଇଥିଲା । ଜଳୁଥିବା ବତୀଖୁଣ୍ଟ ନିକଟରେ ଛିଡ଼ାହୋଇ ସେଇ ଲଫାପାଟିକୁ ପ୍ରେମଭରା ଦୃଷ୍ଟିରେ ଦେଖିଲା, ପୁଣି ଆଘ୍ରାଣ କଲା, ତାହା ଅତରର ବାସ୍ନାରେ ମହକି ଯାଉଥିଲା । ଆଖି ବନ୍ଦକରି ସେ ଲଫାପାକୁ ଥରଟିଏ ଚୁମ୍ବନଦେଲା, ପୁଣି ଆଖିଖୋଲି ଲିଲିର ସୁନ୍ଦର ହସ୍ତାକ୍ଷରରୁ ନିଜ ନାମ ପଢ଼ିଲା ଏବଂ ଧକ୍‌ଧକ୍ ହେଉଥିବା ଛାତିର ସ୍ପନ୍ଦନ ମଧ୍ୟରେ ତାକୁ ଖୋଲିଦେଲା ।

କାହାଣୀ ଏତିକି କହି ସେ ସଜ୍ଜନ ଶାନ୍ତ ହୋଇଗଲେ । ଟିକିଏ ରହିଯାଇ ପୁଣି ଶୁଣିବା ଲୋକଙ୍କୁ ସେ ପଚାରିଲେ, ''ଭାଇମାନେ, କୁହ, ସେ ଲଫାପାରେ କ'ଣ ଥିବ ?'' ହଠାତ୍ ଜଣେ କହିଲା, ''ଲିଲିର ପ୍ରଥମ ପ୍ରେମପତ୍ର ।'' ''ଆଉ କିଛି ଭାବ'' କାହାଣୀର ଶ୍ରୋତାଜଣେ କହଲେ । ''ଲିଲିର ଫଟୋ'' ଆଉଜଣେ କହିଲେ । ''ପୁଣ ଚିନ୍ତାକର !'' କାହାଣୀ ଶୁଣଲାବାଲା ଜୋର୍‌ଦେଲା । ''ଲଫାପା ଶୂନ୍ୟଥିଲା,'', ତୃତୀୟ ବ୍ୟକ୍ତି କହଲା ।

ହାଲ୍‌କା ତାଳି ବାଜିଲା । ତା'ପରେ କାହାଣୀ ଶୁଣାଉଥିବା ଲୋକ କହିଲେ, ''ନା ଆଜ୍ଞା, ସେହି ଖ୍ରୀଷ୍ଟମାସ ପାର୍ଟିର ବିଲ୍ ତା ଭତରେ ଥିଲା... ଏବଂ ଲିଲିର ହସ୍ତାକ୍ଷରରେ ଲେଖାଥିଲା, 'ପ୍ଲିଜ୍ ଆଟେଣ୍ଡ ଟୁ ଇଟ୍, ଲିଲି' । ଜୋର୍‌ରେ ତାଳି ଓ କଳରୋଳ ମଧ୍ୟରେ କେହି ଆଉ ଶୁଣିବାକୁ ଚେଷ୍ଟା ବି କଲେନି କି ଚନ୍ଦ୍ରକାନ୍ତର ଅବସ୍ଥା କ'ଣ ହେଲା ! ଏବଂ ଏ ନାଟର ପରସମାପ୍ତି କେଉଁଠି ହେଲା ।

କିନ୍ତୁ ସେ ପାର୍ଟିରେ କ'ଣ ହେଲା, ଯାହାପାଇଁ ସେ ଫିଟ୍‌ଫାଟ୍ ହୋଇ ଯାଇଥିଲା ?

'ଆଃ, ଖୁବ୍ ଯନ୍ତ୍ରଣାସିକ୍ତ ଘଟଣା ସେ ଥିଲା ।'' ସେ ପୁଣି ଆଗକୁ ଶୁଣାଇବାରେ-ଲାଗିଲା । ଯେତେବେଳେ ଚନ୍ଦ୍ରକାନ୍ତ ସେଠାରେ ପହଞ୍ଚିଲା, ମିସ୍ ଲିଲି ନିଜର ଭାବୀ ପତି ସହ ସେ ଲନ୍‌ରେ ଟହଲୁଥିଲା । ତାକୁ ଏମିତି ଅବସ୍ଥାରେ ଦେଖି ଚନ୍ଦ୍ରକାନ୍ତର ହୃଦୟ

ଭାଙ୍ଗିଗଲା । କିନ୍ତୁ ତା' ପାଇଁ କେବଳ ଏତିକି ସାନ୍ତ୍ୱନା ଥିଲା ଯେ ମିସ୍ ଲିଲି ତାକୁ କେବେ ଥରେ କହିଥିଲା- ''ବିବାହ ପରେ ଆମର ସଂପର୍କ ଆହୁରି ସୁନ୍ଦର ହୋଇପାରିବ !'' ଏହି ବାକ୍ୟ ହିଁ ତାକୁ ସାନ୍ତ୍ୱନା ଦେଉଥିଲା । କିନ୍ତୁ ତଥାପି କିଛି ନା କିଛି ଅଭାବ ରହିଯାଉଥିଲା ।

ଶେଷରେ ଏଇଭଳି ଭଗ୍ନ ହୃଦୟରେ ଚନ୍ଦ୍ରକାନ୍ତ ନାଚରେ ଯୋଗଦେଲା । ନାଚିବା ତାକୁ ଜଣା ନଥିଲା । ଲିଲି ତାକୁ ସାହାରା ଦେଇ କେମିତି ଷ୍ଟେପ୍ ନେବାକୁ ହୁଏ ବତାଇଲା । କ୍ଷଣକ ପାଇଁ ଏଇ ନିକଟତା ହେତୁ ତା ମନ ଖୁସିରେ ନାଚି ଉଠିଲା । ମାତ୍ର ଦୁଇମିନିଟ୍ ଭିତରେ ଲିଲି ଦୂରେଇଗଲା । ଚନ୍ଦ୍ରକାନ୍ତ ଲିଲର ମାଆଙ୍କ ପାଖକୁ ଯାଇ କଥାରେ ମଜ୍ଜିଗଲା । ସେ ଧୀର ସ୍ୱରରେ କହିଲା, ''ଖ୍ରୀଷ୍ଟମାସ ଟ୍ରି ପାଇଁ ଉପହାରର ବଣ୍ଡଲ ଠିକ୍ ସମୟରେ ପହଞ୍ଚି ଯାଇଥିଲା ତ ?''

''ଉପହାର ଆପଣ ନିଜେ ଚୟନ କରିଥିଲେ ?'' ମମି ପଚାରିଲେ ।

''ନା, ନା, ଲିଲି ପହରଦିନ ମୋତେ ଲିଷ୍ଟ ତିଆରିକରି ଦେଇଥିଲା !'' ଚନ୍ଦ୍ରକାନ୍ତ କହିଲା ।

''ହଁ, ତାହେଲେ ଲିଲି ନିଜେ ଯାଇ ଆପଣଙ୍କ ପାଇଁ ନିଜ ମନ ପସନ୍ଦର ଖ୍ରୀଷ୍ଟମାସ ଉପହାର ଆଣିଥିବ ।'' ଲିଲିର ମମି କହିଲେ ।

''ଆଉ ସେ ବୋତଲସବୁ ଆସିଯାଇଛି ତ ?''

''ଓଃ, ଇଟ୍ ଇଜ୍ ସୋ କାଇଣ୍ଡ ଅଫ୍ ୟୁ । ଇଟ୍ ଇଜ୍ ଅଲ୍ ବିକଜ୍ ଅଫ୍ ୟୁ ।'' ଲିଲିର ମମି କହିବାରୁ ଚନ୍ଦ୍ରକାନ୍ତ ଗଦ୍ ଗଦ୍ ହୋଇଉଠିଲା । ଭାବାବେଗରେ ସେହି ମୁହୂର୍ତ୍ତରେ ଏଆଡ଼େ ସେଆଡ଼େ ବୁଲୁଥିବା ଲିଲିକୁ ଦେଖିବାରେ ଲାଗିଥିଲା ଓ ନିଜର ଦୁଃଖକୁ ଭୁଲ୍ ମଣୁଥିଲା ।

ଶେଷରେ ଯେତେବେଳେ ନାଚର କ୍ଲାନ୍ତି ଦେହକୁ ଅବଶ କରିଦେଲା, ଲୋକମାନେ ଲନ୍‌କୁ ଆସିଲେ ଓ ପାଦ୍ରୀ ଆସିବା ପରେ ସବୁ ଲୋକମାନେ ''ଖ୍ରୀଷ୍ଟମାସ ଟ୍ରି'' ଥିବା ଘରକୁ ଗଲେ ।

# ମୋ ଭାରତ ମହାନ



ସକାଳେ ତା' ଟେଲିଫୋନ୍ ଆସିଥିଲା । ସେ ପଞ୍ଜାବ ନ୍ୟାସନାଲ ବ୍ୟାଙ୍କ ଶାସ୍ତ୍ରୀନଗରରୁ କହୁଥିଲା । "ଆଜ୍ଞା ! ମୁଁ ସିଧା ଏୟରପୋର୍ଟରୁ ବ୍ୟାଙ୍କ ଆସିଛି... ଏଇ ପଞ୍ଜାବ ନ୍ୟାସନାଲ ବ୍ୟାଙ୍କରୁ କହୁଛି... ହଁ ଆଜ୍ଞା... ମୁଁ ଅନୀଲ... ଆପଣ... ଚିହ୍ନିଲେ ତ... ଆପଣ ପ୍ରାୟ ଭୁଲିଯିବେଣି... ଆପଣଙ୍କ ପାଇଁ କୋଡ଼ିଏ ହଜାର ଟଙ୍କାର ଡ୍ରାଫ୍ଟ ବ୍ୟାଙ୍କରେ ତିଆରି କରୁଛି... ଆପଣଙ୍କୁ ସାଇନିଂ କରବାର ଥିଲା ଯେ..."

କିଛିଟା ଅସ୍ପଷ୍ଟ ରୂପେ ମୋର ମନେପଡ଼ିଲା... ଅନୀଲ । କିଏ ଅନୀଲ । ଜଣେ ଅନୀଲ ପ୍ରଡ଼କ୍ସନ୍ ମ୍ୟାନେଜର ଥିଲା । ଦ୍ୱିତୀୟ ଅନୀଲ ଏବେ ନୀରଜାର ଆସିଷ୍ଟାଣ୍ଟ । ସେ ବେଳେ ବେଳେ ଫୋନ୍‌କରେ । କିନ୍ତୁ ଏ ବମ୍ବେରୁ ଆସିଥିବା ଅନୀଲ... ଏ ତୃତୀୟ ଅନୀଲ

ଜଣକ କିଏ ? ଫିଲ୍ମ ଦୁନିଆ ଛାଡ଼ିବା ଏବେ ବହୁତ ଦିନ ହେଲାଣି... ଏବଂ ଭୁଲିଯିବା ଓ ଛାଡ଼ି ଦେଇଥିବା ସମ୍ବନ୍ଧ ସବୁ ଅସ୍ପଷ୍ଟ ହୋଇ ଆସିଲାଣି ।

ହଠାତ୍ ଗପଟିଏ ସ୍ମୃତିପଟରେ ଝଲସି ଉଠିଲା । ସେ ଘରର ପ୍ରାଚୀର ଓ ପ୍ରକୋଷ୍ଠ ମନେପଡ଼ିଲା... ସୋଫା ଓ ଗଦିର ମଇଳା ମିଶା ମହକ ବି ମନେପଡ଼ିଲା... ସେ ସବୁର କଠିନତା ବି ମନେପଡ଼ିଲା, କିନ୍ତୁ, ଅନୀଲର ସରନେମ୍ ମନେପଡ଼ିଲାନି କିମ୍ବା ତା ଚେହେରା ବି ସ୍ମୃତିପଟଳକୁ ଓହ୍ଲେଇଲାନି । ମୁଁ ନିଜର ସ୍ମରଣଶକ୍ତି ଉପରେ ସାମାନ୍ୟ ଜୋର୍ ଦେଲି... କିଛି ସ୍ପଷ୍ଟ ହେଲାନି । ଏଇଭଳି ଅବସ୍ଥାରେ ମୋତେ ଖରାପ ବି କଛି ଲାଗିଲାନି, କାରଣ ମୁଁ ଯାହାକୁ ଭୁଲିଯିବାକୁ ଚାହେଁ, ପ୍ରକୃତରେ ତାକୁ ଭୁଲିଯାଏ । ଏଇଭଳି ଏକ ଭଲ ଅଭ୍ୟାସ ମୋ ମଧ୍ୟରେ ବିକଶିତ ହୋଇଯାଇଥିଲା । କେବଳ ସାମାନ୍ୟ ମନେ ପଡ଼ିଲା ଯେ ସେ ଲୋକ ଏକ ଫିଲ୍ମର ପ୍ରୋଜେକ୍ଟ ନେଇ ଆସିଥିଲା ଓ ବହୁତ କଥା କହୁଥିଲା । ଏସବୁ ସେଇ ସମୟର କଥା ଥିଲା ଯେତେବେଳେ ମୁଁ ଅଧିକାଂଶ ଫିଲ୍ମ ଲେଖିବା ଛାଡ଼ି ଦେଇଥିଲି ଏବଂ ନୂଆ ଫିଲ୍ମ ମଧ୍ୟ ସାଇନ୍ କରୁନଥିଲି । ମୁଁ ମୋର ଅଧିକାଂଶ ସମୟ ଲେଖିବା ଓ ସାମ୍ବାଦିକତା କ୍ଷେତ୍ରରେ ଉପଯୋଗ କରୁଥିଲି । ଏହି ସମୟରେ ଅନୀଲ ମୋ ପାଖକୁ ଆସିଥିଲା- ସେ ସେଇ ଅର୍ଦ୍ଧନିର୍ମିତ ଫିଲ୍ମଟିକୁ କିଣିଥିଲା ଯାହା ବନ୍ଦଥିଲା ଓ ତାର ଲେଖକ ମୁଁ ହିଁ ଥିଲି । ତେଣୁ ଅନୀଲ ଏକ ନୈତିକତା ଦୃଷ୍ଟିରୁ ମୋ ପାଖକୁ ଆସିଥିଲା । କିନ୍ତୁ ଏସବୁ କଥା ମୋର ପରେ ହିଁ ମନେ ପଡ଼ିଥିଲା ।

ହଠାତ୍ ଏତେଦିନ ପରେ ଏବଂ କୌଣସି ପୂର୍ବ ସୂଚନା ବିନା ଯେତେବେଳେ ତା' ଟେଲିଫୋନ୍ ପାଇଲି, ମୋ ମଧ୍ୟରେ କୌଣସି ଉତ୍ସାହ ଜାଗିଲାନି । କିନ୍ତୁ ଏଇଭଳି କିଛି ପୁରୁଣା କଥାକୁ ମନେପକାଇ ପଇସା ଦେବାକୁ ଆସିଛି- ଏହା ଖୁବ୍ ଭଲ ଲାଗିଲା ।

ଅନୀଲ ଫୋନ୍‌ରେ କହିଲା ଆପଣଙ୍କୁ ଭେଟିବି- କାଷ୍ଟିଂ ମୁଁ ଠିକ୍ କରିସାରିଛି- ବିନୋଦ୍ ଖାନ୍ନା, ରଜନୀକାନ୍ତ ଏବଂ ଋଷିକପୁର... ତିନିଜଣ, ତରୁଣୀମାନଙ୍କ ଭିତରେ ଡିମ୍ପଲ୍, ପୁନମ୍ ଧିଲନ୍ ଓ ଫରହା... ଶୁଭ ମହୁରତ୍ ର ତାରିଖ ବିନୋଦଖାନ୍ନା ସତାଇଶ ଜୁଲାଇ ବେଳକୁ ଦେଇଛନ୍ତି । ସେଥିପାଇଁ ବହୁତ ଜଲ୍‌ଦି ସ୍କ୍ରିପ୍ଟର ରିଭିଜନ୍ କରିବାକୁ ହେବ, ଆପଣଙ୍କୁ...

ମୁଁ ଆଶ୍ଚର୍ଯ୍ୟ ହେଲି ଯେ ଅନୀଲ ଏ କଥାସବୁ ବ୍ୟାଙ୍କରୁ କାହିଁକି କହୁଛି... ନିଶ୍ଚିତ ଭାବେ ସେ ବ୍ୟାଙ୍କ ମ୍ୟାନେଜରଙ୍କ ପ୍ରକୋଷ୍ଠରେ ବସିଥିବ ଏବଂ ଏସବୁ ନାମରୁ ହିଁ ତାଙ୍କ ଉପରେ ପ୍ରଭାବ ପକାଇବାକୁ ଚେଷ୍ଟା କରୁଥିବ ।

ସେ ପୁଣି କହଲା, ''ଆପଣଙ୍କୁ ଭେଟିବା ଜରୁରୀ...'' କାଲି ତ ମୁଁ ଚଣ୍ଡୀଗଡ଼ ଚାଲିଯିବି... ଆପଣଙ୍କୁ କହିଥିଲି ଯେ, ମୋ ଭିଣୋଇ ସେଠାରେ ଡି.ଆଇ.ଜି. ଅଛନ୍ତି । ଡି.ଆଇ.ଜି. ପୋଲିସ... ମୁଁ ଦିଲ୍ଲୀ ପହଞ୍ଚିବା ମାତ୍ରେ ଏ ପ୍ରଥମ ଫୋନ୍ ଆପଣଙ୍କୁ ହିଁ କରୁଛି,

ନହେଲେ ଆପଣ ଭାବୁଥିବେ କି କେମିତିକା ଲୋକ, କଥାଦେଇ ବି ଆସିଲାନି... ତେବେ ଏମିତି କରିବା କୋଡ଼ିଏ ଜାଗାରେ ତିରିଶ ହଜାରର ଡ୍ରାଫ୍ଟ ତିଆରି କରୁଛି... ଏୟାର ଟିକେଟ୍ ଆଦି ସବୁ ଏକୁଟ୍ରା ହେବ... ଆପଣଙ୍କୁ ବମ୍ବେ ତ ଯିବା ଆସିବା କରିବାକୁ ପଡ଼ିବ ।''

''ତା'ହେଲେ ଆପଣ କାଲି ଚଣ୍ଡୀଗଡ଼ ଯାଉଛନ୍ତି ।'' ମୁଁ ତା କଥା କାଟିଲି ।

''ହଁ ଆଜ୍ଞା ! କାଲି ଚଣ୍ଡୀଗଡ଼ । ପଅରଦିନ ଜଳନ୍ଧର... ମଣ୍ଡେକୁ ଫେରିବି । ତାହେଲେ ଷ୍ଟାଣ୍ଡାର୍ଡ଼ରେ ଆସି ଭେଟନ୍ତୁ... ଠିକ୍ ରିଗାଲ୍ ର ଉପରେ... ଯେତେବେଳେ ଆପଣଙ୍କୁ ସୁଟ୍ ହେବ.... ଠିକ୍ ଅଛି ଦୁଇରୁ ଅଢ଼େଇଟା ଭିତରେ... ଠିକ୍ ଅଛି ।''

କଥା ଶେଷ ହେଲା । ମୁଁ ନିଜ କାମରେ ଲାଗିଲି । ପ୍ରାୟ ଅଧ ଘଣ୍ଟାଏ ପରେ ଅନୀଲର ଟେଲିଫୋନ୍ ଆସିଲା- ସାର୍ ସାର୍... ଆପଣଙ୍କୁ ପୁଣି ଡିଷ୍ଟର୍ବ କରୁଛି... ଏ ବ୍ୟାଙ୍କବାଲା ଡ୍ରାଫ୍ଟ ତିଆରି କରୁନାହାନ୍ତି... କାଲି ବୁଦ୍ଧ ପୂର୍ଣ୍ଣିମା ଛୁଟି । ପହରଦିନ ସଣ୍ଡେ... ସେଥିପାଇଁ...

କିନ୍ତୁ ଆପଣ ତ ଡ୍ରାଫ୍ଟ ପାଇଁ ତାଙ୍କୁ କ୍ୟାଶ୍ ଦେଉଥିବେ । ତା'ହେଲେ ତାଙ୍କର ଅସୁବିଧା କ'ଣ ? ମୁଁ ଟିକିଏ ଚିଡ଼ି ଉଠି କହିଲି ।

କ୍ୟାଶ୍ ନାହିଁ, ମୋ ପାଖରେ ପଚାଶ ହଜାରର ଡ୍ରାଫ୍ଟ ଅଛି । ସେ କହିଲେ ।

ତା'ହେଲେ ଅସୁବିଧା କ'ଣ ? ଡ୍ରାଫ୍ଟକୁ ବ୍ୟାଙ୍କ ଭଙ୍ଗାଇଦେବ ।

ସେଇଆ ତ ! କିନ୍ତୁ ଏମାନେ କହୁଛନ୍ତି- ଆଜି ହେଇପାରିବନି... ଯଦି ହେବ ମଣ୍ଡେ ଆଗରୁ ନୁହଁ... ତା'ହେଲେ ଠିକ୍ ଅଛି ମୁଁ ମଣ୍ଡେକୁ ଆପଣଙ୍କୁ ତିରିଶ ଦେବି... ଆପଣ ଯେତେବେଳେ ଷ୍ଟାଣ୍ଡାର୍ଡ଼କୁ ଆସିବେ, ମୋ ପାଇଁ ହଜାରେ ଦେଢ଼ହଜାର କ୍ୟାଶ୍ ନେଇ ଆସିବେ... ଟ୍ୟାକ୍ସିରେ ଚଣ୍ଡୀଗଡ଼ ଯିବି... କିଛି ଲିକ୍ୱିଡ୍ ମନି ଦରକାର ହେବ... ଠିକ୍ ଦୁଇ ଆଉ ଅଢ଼େଇଟା ଭିତରେ ଷ୍ଟାଣ୍ଡାର୍ଡ଼... ଓ.କେ...

ସେ ଫୋନ୍ ବନ୍ଦ କରିଦେଲା । ମୁଁ ଆଶ୍ଚର୍ଯ୍ୟ ହେଲି ଯେ ସେ ଏକଥା ବ୍ୟାଙ୍କରୁ କେମିତି କହୁଥିଲା । ଉଡ଼ାଜାହାଜରେ ଆସିଛି । ଏୟାରପୋର୍ଟରେ ଓହ୍ଲାଇଛି- ଓହ୍ଲେଇ ସାରି ସିଧା ବ୍ୟାଙ୍କ ଆସିଛି । ଟ୍ୟାକ୍ସିରେ ଚଣ୍ଡୀଗଡ଼ ଏବଂ ଜଳନ୍ଧର ଯିବାର ପ୍ରୋଗ୍ରାମ ଅଛି ଓ ଏହି ବ୍ୟକ୍ତିର ପକେଟ୍‌ରେ ଏତିକି ଟଙ୍କା ନାହିଁ ଯେ ଛୋଟ ମୋଟ କାମ ପାଇଁ ପଇସା ମାଗିପାରୁଛି ? ମୋର ସନ୍ଦେହ ହେଲା... କାରଣ ମୁଁ ଯେତେବେଳେ ପଚାରିଲି ଆପଣ କେଉଁଠି ରହୁଛନ୍ତି ବୋଲି ସେ କୌଣସି ଠିକଣା ଦେଲାନି, କହିଲା ସିଧା ବ୍ୟାଙ୍କ ଆସିଛି... ରହିବା ପାଇଁ କିଛି ବନ୍ଦୋବସ୍ତ କରିନାହିଁ ।

ପ୍ରଥମତଃ ମଇ ମାସର ପ୍ରଚଣ୍ଡ ଗରମ ଓ ରିଗାଲ୍ ପାଖରେ ପାର୍କିଂ ଜାଗା ମଧ କମ୍ ପୁଣି ଦୂରରେ ପାର୍କିଂ କରି ଷ୍ଟାଣ୍ଡାର୍ଡ଼ ପର୍ଯ୍ୟନ୍ତ ପାଦରେ ଚାଲି ଚାଲି ଯିବାର ଆମନ୍ତ୍ରଣ... ମୁଁ ଏହି ସନ୍ଦେହାତ୍ମକ ସ୍ଥିତି ଓ ଅଧିକ ଗରମ ହେତୁ ସ୍ଥିର କଲି ଯେ ମୁଁ ସାକ୍ଷାତ କରିବାକୁ

ଯିବିନାହିଁ । ଷ୍ଟାଣ୍ଡାର୍ଡ଼ରେ ଯେଉଁ ପଚାଶ ଶହେ ଖର୍ଚ୍ଚ ହେବ, ହେଉ, ହେଉ ପଛେ...

ମୁନ୍ନିର ଅପରେସନ୍ ଗତକାଲି ହୋଇଥିଲା । ତା' ପାଇଁ ତ ନୁହେଁ ତାକୁ ଜଗାରଖା କରୁଥିବା ଲୋକଙ୍କ ପାଇଁ ଖାଇବା ନେଇକରି ଯିବାର ଥିଲା । ମୁନ୍ନିର ଚିନ୍ତା ମୁଣ୍ଡ ଉପରେ ଥିଲା, ପୁଣି ଭାବିଥିଲି ସାଢ଼େ ବାରଟା କି ଗୋଟାଏ ସୁଦ୍ଧା ଖାଇବା ପହଞ୍ଚାଇଦେଇ ରିଗଲ୍ ଚାଲିଯିବି । ସେଠାରୁ ଅଟୋ ନେଇଯିବି । କିନ୍ତୁ ଅଟୋବାଲା ଅଳ୍ପ ଦୂର ଯିବାକୁ ମନାକରନ୍ତି, ପୁଣି ଏଭଳି ଖରାରେ ଏମିତି ଲୁନା ଖୋଜିବା ଯାହା ରିଗଲ୍ ପର୍ଯ୍ୟନ୍ତ ଯିବ ଏବଂ ବକ୍‌ବକ୍ ନହେବ, ମୋତେ ଭାରି ମୁସ୍କିଲ ଲାଗୁଥିଲା ।

ଶେଷରେ ମୁନ୍ନି ରୁମ୍‌ରେ ପହଞ୍ଚିଲି । ଅଠର ତାରିଖରେ ଅପରେସନ୍ ହୋଇଥିଲା । ଆଜି ଥିଲା ଉଣେଇଶ- ଏବଂ ସାରା ରାତି ହସ୍ପିଟାଲରେ ରହି ସକାଳେ ଘରକୁ ଆସିଥିଲି । ସେତେବେଳେ ଅନୀଲର ଫୋନ୍‌କଲ୍ ମୁଁ ପାଇଥିଲି ।

ଖାଇବା ନେଇ ହସ୍ପିଟାଲରେ ପହଞ୍ଚିବା ବେଳକୁ ଘଣ୍ଟାରେ ଦୁଇଟା ବାଜିଥିଲା । ଜଗଦୀଶ, ପପୁ, ଦୀପୁ ଓ ଗୋଲୁ ସମସ୍ତେ ଖାଇଲେ, ମୁଁ ବି ଖାଇଲି । ମୁନ୍ନିକୁ ଗ୍ଲୁକୋଜ ଦିଆଯାଉଥିଲା । ଷ୍ଟାଣ୍ଡାର୍ଡ଼ଠାରୁ ନଯିବା ପାଇଁ ସ୍ଥିର କରି ସାରିଥିଲି- ଏସି ରୁମ୍ ଏବଂ ବାହାରେ ଜଳୁଥିବା ସୂର୍ଯ୍ୟତାପକୁ ଦେଖି ଆହୁରି ଦୃଢ଼ ହୋଇଯାଇଥିଲି ଯେ ଯିବିନି । ମୁନ୍ନିର ଚିନ୍ତା, ମନରେ ବ୍ୟାକୁଳତା, କାହାରି ପାଖରୁ ବୋକା ନ ବନିବାର ମନର ପରାମର୍ଶ... ତିନିଟା କଥା ମିଶିଯିବାରୁ ଗଭୀର ନିଦ ହୋଇଗଲା ଏବଂ ଦୁଇଟା ପଇଁଚାଳିଶରୁ ଶୋଇ ଛଅଟା ବେଳେ ଉଠିଲି । ଆଉ ଉଠିଲା ବେଳକୁ ମୁଁ ଭୁଲିଯାଇଥିଲି ଯେ ମୋର କାହାକୁ ଦେଖା କରିବାର ଥିଲା ।

ଘରେ ପହଞ୍ଚିଲା ବେଳକୁ ଗାୟତ୍ରୀ କହିଲେ- କେହି ଜଣେ ଅନୀଲ ନାମକ ବ୍ୟକ୍ତି ତିନିଟା ବେଳେ ଟେଲିଫୋନ୍ କରିଥିଲେ । ତୁମ ସହ କ'ଣ କାମ ଥିଲା, ସେ ଅପେକ୍ଷା କରୁଥିଲେ । ପୁଣି ଦ୍ୱିତୀୟଥର ପାଇଁ ଚାରିଟାବେଳେ ଫୋନ୍ କରିଥିଲେ- ମୁଁ କହିଲି ହସ୍ପିଟାଲରେ ଅଟକି ଯାଇଥିବେ । ଆମ ଝିଅାରୀର କାଲି ଅପରେସନ୍ ହୋଇଛି ।'' ମୁଁ ଶୁଣି ଭାବିଲି ଠିକ୍ ଅଛି, ଗୋଟେ ଧନ୍ଦାଗଲା, ଚଣ୍ଡୀଗଡ଼ ତ ସେ ଲକ୍‌ଜୁରୀ ବସ୍‌ରେ ଯାଇପାରିବ- ଟ୍ୟାକ୍ସିରେ ଯିବାର ଆବଶ୍ୟକତା କ'ଣ ?... ଆଉ ପୁଣି କାଲି ସକାଳୁ ସେଠାରୁ ବାହାରି ଆସିବ...

କିନ୍ତୁ ପରଦିନ ସକାଳେ ହାତରେ ଖବରକାଗଜ ଧରି ଅନୀଲ ଆମ ଘରକୁ ଆସିଲା । ମୁଁ ଏବେ ତାକୁ ଠିକ୍ ଭାବେ ଚିହ୍ନିଲି- ଚେହେରା ବି ମନେପଡ଼ିଲା- ମୋ ସାମ୍ନାରେ ସେ ଥିଲା । ତା' ଚେହେରାରେ ସେମିତି କିଛି ଭାବ ନଥିଲା । କିମ୍ବା ଏତେ ସକାଳୁ ଆସିଥିବାରୁ କୌଣସି ସଂକୋଚ, ମୁଁ ତାକୁ ବସାଇଲି ଓ ଭାବିଲି ହୁଏତ ଦେଢ଼ ହଜାର ଟଙ୍କାର ବ୍ୟବସ୍ଥା ସେ କରିସାରିଥିବ ।

ମୁଁ ଗତକାଲି ତାକୁ ଭେଟିପାରି ନଥିବାରୁ କ୍ଷମା ମାଗିବାରୁ ସେ କହିଲା- ନା...

ନା... ମୁଁ ବୁଝିପାରୁଛି । ଆପଣ ତ କେବେ କଥା ଖିଲାପ କରନ୍ତିନି । କହିସାରି ସେ ବ୍ୟାଗ୍ ରଖିଲା ।

ଆପଣ ରହୁଛନ୍ତି କେଉଁଠି ?

ଲୋଦି ରୋଡ଼ରେ ମୋ ବନ୍ଧୁଙ୍କ ଘରେ... ତେବେ ଆଜ୍ଞା ଏ ଫିଲ୍ମ ଲଞ୍ଚ୍ ହେଲା, ନିଶ୍ଚିତ ବୋଲି ଜାଣନ୍ତୁ- କୋଟିଏ ଲାଗିବ, ହୁଏତ ଆଉ ପଚିଶ ଲକ୍ଷ କେବଳ ମହୁରତ୍‌ରେ ଯିବ । ଆପଣଙ୍କୁ ସାଇନିଂ ଏମାଉଣ୍ଟ ଦେବାକୁ ହେବ... ଅଢ଼େଇ କି ନୀତି ଲକ୍ଷ ସ୍କ୍ରିପ୍ଟ ପାଇଁ ଖର୍ଚ୍ଚ ହେବ... ହୋଟେଲ୍ ଖର୍ଚ୍ଚ, ଯିବା ଆସିବା... ଏୟାର ଭଡ଼ା... ଇନ୍‌ସିଡ଼େଣ୍ଟାଲ... ଅତିକମ୍‌ରେ ଡ୍ରେସ୍ ବାବଦରେ ଦି ଲକ୍ଷ- ମହୁରତ୍ ଖର୍ଚ୍ଚ ଏସବୁ । ଟଙ୍କା କ'ଣ ଆଜ୍ଞା...ଖର୍ଚ୍ଚ କଲେ ଆସିଯିବ... ଟଙ୍କା ତ ଖେଳେଇ ହେଇ ପଡ଼ିଛି ।

କିନ୍ତୁ ଏତେଦିନ ପରେ ଆପଣ ଏ ପ୍ରୋଜେକ୍ଟକୁ ରିଭାଇଭ୍ କଲେ କାହିଁକି ? ଏବେ ତ ଇଣ୍ଡଷ୍ଟ୍ରୀର ଅବସ୍ଥା ଭଲ ନୁହେଁ... ପଇସା ଠିକ୍ ଭାବେ ଆସୁନି... ପଇସା ରିଏଲ୍ ଇଷ୍ଟେଟ୍‌ରେ ଲୋକେ ଲଗାଉଛନ୍ତି । ମୁଁ କହିଲି ।

ତା'ହେଲେ... ଆପଣ ତ ଫ୍ଲାଟ୍ ଦେଖିଥିଲେ । ଶ୍ୱଶୁରଘର ଲୋକଙ୍କ ଦୟା ଉପରେ କେତେଦିନ ସେଠି ପଡ଼ିଥାଆନ୍ତି... ଏମିତି ତ ସେମାନେ ଲକ୍ଷପତି କୋଟିପତି... ଆପଣ ତ ଦେଖିଛନ୍ତି... ମୁଁ ସେ ପୁରୁଣା ଫ୍ଲାଟ୍‌ଟିକୁ ଛାଡ଼ି ନୂଆ ଫ୍ଲାଟ୍‌ଟେ କିଣିଛି । ଶସ୍ତାରେ ମିଳିଲା- ଷୋହଳ ଲକ୍ଷରେ... ଫର୍ଣ୍ଣିଚର୍, ଫିଟିଙ୍ଗସ୍, ଆର୍ଟ ଏବଂ ଡେକୋରେସନ୍‌କୁ ମିଶେଇ ପଚିଶ ଯାଏ ପଡ଼ିଗଲା... ସେ କହିଚାଲିବା ସଙ୍ଗେ ସଙ୍ଗେ ବ୍ୟାଗ୍‌ରୁ ଫାଇଲ୍ କାଢ଼ିବାରେ ଲାଗିଥିଲା ।

ମୁଁ ବୁଝିପାରୁ ନଥିଲି ଯେ ମୁଁ କହିଥିବା କଥାର ଉତ୍ତର ପଚିଶ ଲକ୍ଷର ଫ୍ଲାଟ୍‌ଯାଏ କେମିତି ଚାଲିଗଲା । ମୁଁ ତା ଆଡ଼କୁ ଚାହିଁଲି- ସେ ନିର୍ବିକାର ଭାବର ପୁରୁଣା ସ୍କ୍ରିପ୍ଟର ଫାଇଲ୍ କାଢ଼ିଥିଲା ଏବଂ ମୋତେ ଦେଇ କହିଲା- ଟିକିଏ ଦେଖି ମତାମତ ଦିଅନ୍ତୁ- ମୁଖ୍ୟ କାଷ୍ଟିଂ ଛଡ଼ା ଆଉ କିଏ କିଏ ରହିବେ... ମୁଁ ବହୁତ ଚିନ୍ତାକରି ନୋଟ୍ କରିଛି ।

ମୁଁ ସ୍କ୍ରିପ୍ଟ ଦେଖିଲି । ପ୍ରଥମ ପୃଷ୍ଠାରେ କମ୍ପାନୀ ନାମ ପରେ ଫିଲ୍ମର ନାମ ଥିଲା- 'ଦୁନିଆଁ ଦେଖେଗୀ' ଏବଂ ବଡ଼ବଡ଼ ଅକ୍ଷରରେ ମୋ ନାଁ- ରିଟେନ୍ ବାଇ... ଏବଂ ପ୍ରତ୍ୟେକ ପୃଷ୍ଠାରେ ଏସୋସିଏସନ୍‌ର ରେଜେଷ୍ଟ୍ରୀ ହୋଇଥିବାର ମୋହର ଥିଲା ।

- ଆପଣ ଫିଲ୍ମର ନାମ ବଦଳାଇଦେଲେ ।

- ଏଥିରେ ବି ପଚାଶ ହଜାର ଖର୍ଚ୍ଚ ହେଲା । ଆଉ କାହାରି ପାଖରେ ଏ ଟାଇଟିଲ୍... ଖର୍ଚ୍ଚ ତ ହୁଏ... ଇଣ୍ଡଷ୍ଟ୍ରୀ ଏଇଥିରେ ହିଁ ଚାଲିଥାଏ... ଆମେ ଆପଣମାନେ ମଧ୍ୟ...

ମୁଁ ପୁଣି ତାକୁ ଦେଖିଲି । ସେ ଅନ୍ୟଗୋଟେ ଫାଇଲ୍ କାଢୁଥାଏ । ମୁଁ ପଚାରିଲି- ଆପଣ ପତ୍ନୀଙ୍କ ସହ ଆସିଛନ୍ତି ?

- ନା ଆଜ୍ଞା । ସେ ଘରେ ଅଛନ୍ତି । -ସେ କହିଲା ଏବଂ ଏଜ ଏକ୍ସ-ରେ ମୋତେ

ଦେଖାଇଲା । ସେଇଟା ଥିଲା ଆଣ୍ଠୁର ଏକ୍ସ-ରେ ଏବଂ ମୁଁ ପୁଣି କିଛି ପ୍ରଶ୍ନ କରିବା ଆଗରୁ ସେ ନିଜର ଆଣ୍ଠୁ ଫୁଙ୍ଗୁଳା କରିଦେଲା- ଅପରେସନ୍ ଏବଂ ଷ୍ଟିଚିଂର ଚିହ୍ନ ମୁଁ ଦେଖିଲି । ଏହା ଘଷିହୋଇ ଖୁବ୍ ଯନ୍ତଣା ହୁଏ ।' 'ସେଇଥିପାଇଁ ଆପଣ ଛୋଟାଉଥିଲେ !' ମୁଁ ସହାନୁଭୂତିର ସହ କହିଲି... ତାର ଉତ୍ତର ଥିଲା ଅତ୍ୟନ୍ତ ବିଚିତ୍ର-

- ହଁ ଆଜ୍ଞା... ସେଇଥିପାଇଁ ଭାବିଛି ଏବେ ଡାଇରେକ୍ଟ କଣ୍ଟାକ୍ଟ ରଖିବି । ଆପଣ ଦେଖିଥିଲେ, ମୋ ଚାରିପଟେ ବିଭିନ୍ନ ପ୍ରକାରର ଲୋକେ ଘେରିହେଇଥିଲେ । ସବୁ ଜାଗାରେ ଅନୀଲ ସ୍ଥାନରେ ତା ପତ୍ନୀକୁ ଗଛକୁ ଚଢ଼ାଇଥିଲେ । କଷ୍ଟ୍ୟୁମ୍ ଡିଜାଇନିଙ୍ଗ୍ ତ ଭାଉଜ କରିବେ... ହେୟାର ଷ୍ଟାଇଲ୍ ତ ସେ ହିଁ ଠିକ୍ କରିବେ ।

ମୋତେ ଲାଗୁନଥିଲା ଯେ ତାଙ୍କ ସ୍ତ୍ରୀ ଏଇଆ ଶୁଣି ଖୁସିହେଉଥିବେ । ସେ ପ୍ରଡ୍ୟୁସରମାନଙ୍କ ସ୍ତ୍ରୀ ଭଳି କୌଣସି ଚାକଚକ୍ୟର ଦୁନିଆଁରେ ନଥିଲା । ସେ ଥିଲା ଗୋଟେ ନିଛକ ଗୃହିଣୀ । ବଡ଼ ଘରର ଅବୋଲି ତାର ଗର୍ବ ବି ନଥିଲା ।

ହଂସା ଆପଣଙ୍କୁ ବହୁତ ମନେପକାଏ । ସେ ମୋତେ କହିଲା । ମୋର ତା ସ୍ତ୍ରୀ ନାଁ ଭଲଭାବେ ମନେପଡ଼ିଲା । ହଂସା, ତା ନାଁ ଥିଲା ହଂସା ।

ଏକ୍ସିଡ଼େଣ୍ଟ ବେଳେ ସେ ସାଥିରେ ଥିଲା । ତାର ଚଉଦଟି ଷ୍ଟିଚ୍ ପଡ଼ିଥିଲା । ତାର ଚାଳିଶି ହଜାର ଟଙ୍କାର ଚେନ୍ ବି ହଜିଲା । ମୋ ଘଣ୍ଟା ଦାମ୍ ଦଶ ହଜାର... ବାହାଘର ସମୟର ଘଣ୍ଟାବି... ହସ୍ପିଟାଲ ପହଞ୍ଚି ଏକ୍ସରେ କଲି... ମେସିନ୍‌ୱାଲା ଚିତ୍କାର କଲା- ପୂରା ମେସିନ୍ ରକ୍ତରେ ଭିଜିଯିବ, ରକ୍ତ ସଫାକରି ଆସ । ମୁଁ ଚିତ୍କାର କଲି ପ୍ରାଣ ବଡ଼ ନା ମେସିନ୍! ମେସିନ୍ କେତେ ଟଙ୍କା ? ଦି ଲକ୍ଷ । ଚାରି ଲକ୍ଷ । ଦଶ ଲକ୍ଷ । ପୋଲିସ ପଚାରିଲା- ''ଆକ୍ସିଡ଼େଣ୍ଟ କିଏ କଲା ?'' ମୁଁ କହିଲି "ଜଣାନାହିଁ । ଏକ୍ସିଡ଼େଣ୍ଟ କାହା ସହିତ ହୋଇଥିଲା... ରାତି ଥିବାରୁ ଜଣା ପଡ଼ିଲାନି... ।"

ତା କଥାରୁ ଆଗପଛ କିଛି ଧରିପାରିଲନି । ସେ ଚାହା ପିଉଥିଲା । କହିଲା- ଏ ବଡ଼ ପ୍ରୋଜେକ୍ଟ ସହିତ ଗୋଟେ ଛୋଟ ବଜେଟ୍‌ର ଫିଲ୍ମ ବି ଅଛି 'ମେରା ଭାରତ ମହାନ୍' । ଏ ଟାଇଟଲ ମୁଁ ଦିଲ୍ଲୀରେ ଥିବା ହୋର୍ଡ଼ିଂରୁ ପାଇଛି... ଦେଶଭକ୍ତିମୂଳକ.. ଏହାପାଇଁ ବଜେଟ୍ ରଖିଛି ଚାଳିଶି ଲକ୍ଷ.. ଦରକାର ପଡ଼ିଲେ ପଚାଶ ଲକ୍ଷ ପର୍ଯ୍ୟନ୍ତ... ଠିକ୍ ଅଛି... ସେ ଢୋକେ ଚା' ପିଇଲା ।

ମଝିରେ ଟେଲିଫୋନ୍ ଆସିବାରୁ ସେ ଚୁପ୍‌ଚାପ୍ ବସିରହିଲା । ପୁଣି କହିଲା- ଆପଣ ତ ବହୁତ୍ ସମଝଦାର୍ ଲୋକ ସାର୍... କଥାରେ ଯାହା କହିହୁଏନା ତାକୁ ବି ବୁଝିପାରନ୍ତି । ଏଭଳି ମହନୀୟତା ଆପଣଙ୍କ ପାଖରେ ଅଛି ।

ସେ କେଉଁଆଡ଼କୁ ଈଶାରା କରୁଛି, ତାହା ଜାଣିବାକୁ ଚେଷ୍ଟା କରି ମୁଁ ଶଙ୍କାଗ୍ରସ୍ତ ହେଲି । ତାକୁ ସିଗାରେଟ୍ ଦେଲି । ସେ ସିଗାରେଟ୍ ଟାଣିଲା, ଟାଣିସାରି କହିଲା- ଟ୍ୟାକ୍ସି

ଦଶଟାବେଳେ ଆସିବ, ସେଠାରୁ ଲୋଦିରୋଡ଼, ସେଠୁ ଡି.ଆଇ.ଜି. ସାହେବଙ୍କ ପାଖକୁ... ସେଠାରୁ ମୋ ଭିଶୋଇ ଓ ଆଇ.ଜି. । ସେଠାରୁ ତାଙ୍କ ସଙ୍ଗେ ଜଳନ୍ଧର ଯିବି । ତାଙ୍କ ବୁଲେଟ୍‌ପ୍ରୁଫ୍ କାର୍‌ରେ... ପଚିଶ ତିରିଶ ଲକ୍ଷ ଟଙ୍କା ଧରି ପୁଣି ଲେଉଟି ଆସିବି ।

ମୁଁ ପୁଣି ତା' ଆଡ଼କୁ ଦେଖିଲି... ତା' ଆଖିରେ ଆଶାର କେଉଁ ଏକ କିରଣ ଝଟକୁଥିଲା ଦେଖିବାକୁ । ସେଠାରେ କୌଣସି କିରଣ ନଥିଲା... ଆଉ ଅନ୍ଧକାର ବି ନୁହେଁ ।

ପୁଣି ହଠାତ୍ ସେ କଥା ବଦଳାଇଲା-

- ପୁରୁଷ ସହ ସ୍ତ୍ରୀର ଯେତିକି ସମୟ ସମ୍ମାନର ସହ ବିତେ ତାହା ହିଁ ଭଲ... ସେ ନିଜକୁ ନିଜେ କହି ସିଗାରେଟ୍ ଥରଟେ ଟାଣିଲା ଓ ଫୋନ୍ ଆଡ଼କୁ ଚାହିଁଲା ।

ଫୋନ୍ କରିବେ, କରନ୍ତୁ ! ମୁଁ କହିଲି ।

ଏସ୍.ଟି.ଡ଼ି. ଅଛି ?

ହଁ ।

ଛାଡ଼ନ୍ତୁ... ଏମିତି ବମ୍ୱେ....

ଆରେ କରନ୍ତୁନା-

ପୁଣି କେବେ କରବି... ଚଣ୍ଡୀଗଡ଼ରୁ କରିନେବି । ଏବେ ସେ ଚୁପ୍‌ଚାପ୍ ବସିଥିଲା । ମୁଁ ବି ଚୁପ୍‌ଥିଲି । ଖୁବ୍ ନୀରବ...ନିଶବ୍ଦ । ଆମେ ବହୁତ କଥା ହୋଇସାରିଥିଲୁ । ତାର ଉଠିବାର କିନ୍ତୁ କୌଣସି ଲକ୍ଷଣ ପ୍ରକାଶ ପାଉନଥିଲା । ମୁଁ ନିରବତାକୁ ଭାଙ୍ଗିଲି... ଏଇଥିପାଇଁ ଏତେବର୍ଷ ପରେ ଆପଣ ପୁଣି ଏକ୍ଟିଭ୍ ହେଲେ ।

ଇଜ୍ଜତ୍ ହିଁ ସବୁଠୁ ବଡ଼ ସାର୍ ।

ମୁଁ ପୁଣି ଚମ୍‌କିପଡ଼ିଲି ।

କାହାରିକୁ କହିଲା ପରେ ହିଁ କାମ ହୁଏ... ସେଠି କୌଣସି ଇଜ୍ଜତ ରହେନା ଏବଂ ଆଜି ନିଜ ଇଜ୍ଜତ ବ୍ୟତୀତ ଆଉ କ'ଣ ଅଛି ? ସେ କହିଲା ।

ମୁଁ ପୁଣି କଥାର ମୋଡ଼କୁ ଧରିପାରିଲିନି, କିନ୍ତୁ ପର ମୁହୂର୍ତ୍ତରେ ମୋତେ ଲାଗିଲା ଯେ କଥା ପୁଣି ଫେରିଲା । କଥା ସ୍ପଷ୍ଟ କରିବାକୁ ଯାଇ କହିଲି- ତା'ହେଲେ ଟ୍ୟାକ୍ସି ଆପଣ ଲୋଦିରୋଡ଼କୁ ଡାକିଛନ୍ତି ?

ହଁ... ରାସ୍ତାରେ ଡ୍ରାଇଭର ପେଟ୍ରୋଲ ପାଇଁ ମାଗି ନିଅନ୍ତି । ଟ୍ୟାକ୍ସି ସେଇଠି ଚଣ୍ଡୀଗଡ଼ରେ ମିଳିବ । ଚଣ୍ଡୀଗଡ଼ରେ ତ ବୁଲେଟ୍ ପ୍ରୁଫ୍ କାର୍‌ରେ ଯିବାକୁ ହେବ... ପଚିଶି ତିରଶ ଲକ୍ଷ ତ ଜାଣନ୍ତୁ ପଡ଼ିଛି.. ଖାଲି ଉଠେଇ କରି ଆଣିବା କଥା ।

ଆଜି ବ୍ୟାଙ୍କ ବନ୍ଦ... ସେଥିପାଇଁ ମୋ ପାଖରେ ବି... ପଇସା ଉଦ୍ଦେଶ୍ୟରେ ମୁଁ କହିଲି । ପାଞ୍ଚଶହ ବି ବହୁତ ହେବ, ସେ କହିଲା ।

ମୁଁ ଆଶ୍ୱସ୍ତିରେ ନିଶ୍ୱାସ ନେଲି ଓ ପାଞ୍ଚଶହରେ ହିଁ ମାମଲାଟିକୁ ଶେଷ କରିବାକୁ

ଚାହିଁଲି... ତାହା ଜାଣି ବି ଯେ ମୋତେ ଠକି ଦିଆଯାଉଛି ଏବଂ ଏ ଲୋକ ଆଉ ଫେରିବ କି ନାହଁ । ମୁଁ ଆଲମାରୀରୁ ଟଙ୍କା କାଢ଼ିଛି କି ନିହଁ ସେ ପୁଣି କହିଲା- 'ସାର୍ ! ହଂସା ଦ୍ୱିତୀୟ ବିବାହ କରିନେଲା... ଆଉ ଆପଣଙ୍କୁ କଣ ଲୁଚାଇବି ?...''

ମୋର ସନ୍ଦେହ ହେଲା । ମୁଁ ତାକୁ ଟଙ୍କା ଦେଇ ପଚାରିଲି- କିନ୍ତୁ ବର୍ତ୍ତମାନଯାଏ ତ ଆପଣ... ହଂସା କେବେ ଦ୍ୱିତୀୟ ବିବାହ କଲା ? ଆପଣଙ୍କୁ ଡାଇଭର୍ସ ?

ହଁ, ସେ ଡାଇଭର୍ସ ନେଇଯାଇଥିଲା । କାରଣ ତାହା ପାଇଁ ଇଜ୍ଜତ ବଞ୍ଚାଇପାରି ନଥାନ୍ତି- ତେବେ ? ସେ ଥିଲା ମୋ ପାଇଁ ଟୋଟାଲି ଫେଥ୍‌ଫୁଲ୍... ସେଥିପାଇଁ ଜରୁରୀ ଥିଲା ମୋତେ ଛାଡ଼ପତ୍ର ଦେବା... ଓ ନିଜ ଇଜ୍ଜତ୍ ରକ୍ଷାକରିବା... ସାର୍ ଟଙ୍କା ତ ଫେରିଆସେ... କିନ୍ତୁ ଇଜ୍ଜତ୍ ଫେରେନା, କହି ସେ ଛିଡ଼ାହେଲା ।

ମୁଁ ପ୍ରାୟ ନିଃଶବ୍ଦ ଥିଲି ।

ସେ ଜୋତା ପିନ୍ଧି ସାମାନ୍ୟ ଦୋହଲିଗଲା, ମୁଁ ତାକୁ ସମ୍ଭାଳିନେଲି ଓ ସେ ଦୁଆରକୁ ଧରି ରହିଗଲା, ପୁଣି ସେ ନିରବ । ଟଙ୍କା ପକେଟ୍ ଭିତରେ ରଖି ବ୍ୟାଗ୍ ଉଠାଇ ସେ ସିଡ଼ିରୁ ଓହ୍ଲାଇବାରେ ଲାଗିଲା । ମୁଁ କହିଲି- 'ସିଡ଼ିରେ ଆପଣଙ୍କୁ କଷ୍ଟ ହେଉଛି ।'

- ନାଁ, ସାର୍ ! ଓହ୍ଲାଇବାରେ ବେଶୀ କଷ୍ଟ ହେଉନି... ଶେଷରେ ସିଡ଼ିରେ କ୍ଷଣଟାଏ ରହିଯାଇ ସେ କହିଲା- ଦୟାକରି ପ୍ରସ୍ତୁତ ଥିବେ, ପ୍ରଥମଟିକୁ ରିଭାଇଜ୍ କରିବେ ଓ ଦ୍ୱିତୀୟଟିକୁ ଆପଣ ଲେଖିବେ- 'ଦୁନିଆ ଦେଖେଗୀ' ଓ 'ମେରା ଭାରତ ମହାନ୍' ।

ମୁଁ କହିଲି- 'ଅଲ୍ ଦି ବେଷ୍ଟ ଅନୀଲ୍ ।'

'ଥ୍ୟାଙ୍କ ୟୁ ସାର୍ !' କହିକହି ସେ ଗଳି ଭିତରେ ପହଞ୍ଚି ସାରିଥିଲା ।

ମୁଁ ବାଲ୍‌କୋନିରୁ ତାକୁ ଚାହିଁଲି- 'ଦୁନିଆ ଦେଖେଗୀ' ଏବଂ 'ମେରା ଭାରତ ମହାନ୍'ର ପ୍ରଡ୍ୟୁସର ଛୋଟେଇ ଛୋଟେଇ ଗଳିରୁ ମେନ୍‌ରୋଡ଼ ଆଡ଼କୁ ମୁହାଁଉଥିଲା । ମୁଁ ବାଏ ବାଏ କଲି, କିନ୍ତୁ ସେ ଆଉ ପଛକୁ ଫେରି ଚାହୁଁନଥିଲା ... ।

# ସାପ

ଡାକବଙ୍ଗଳାର ଚୌକିଦାର ମହମବତୀ ଜଳାଇଦେଇ ଚାଲିଗଲା । ଏତେଦିନ ଯାଏ ଆନନ୍ଦ କେବେ ଡରି ନଥିଲା । କିନ୍ତୁ ଆଜିର ବାତାବରଣରେ ଏମିତି କିଛି କଥା ଥିଲା ଯାହା ସମଗ୍ର ପରିବେଶକୁ ବେଶ୍ ଭୟାବହ କରି ଦେଇଥିଲା । ଚୌକିଦାର କହିଥିଲା, ''ସାର୍ ବର୍ଷାରେ ଜଙ୍ଗଲୀ ପଶୁମାନଙ୍କର ଡର ନାହିଁ । ଏମିତି ଏ ଜଙ୍ଗଲରେ ଚିତା, ମହାବଳ ବାଘ ଓ ଭାଲୁଙ୍କର ଭୟ ଅଛି । କିନ୍ତୁ ଏବେ ବର୍ଷା ହେତୁ ସେମାନଙ୍କୁ ସବୁ ଜାଗାରେ ପାଣି ପିଇବାକୁ ମିଳି ଯାଉଛି । ତେଣୁ ସେମାନେ ଆଉ ଇତଃସ୍ତତ ବୁଲୁନାହାନ୍ତି । ଏ ଝରଣା ପାଖକୁ ସେଥିପାଇଁ ସେମାନେ ଆସୁନାହାନ୍ତି... କିନ୍ତୁ ସାପ ବାହାରୁଛନ୍ତି, ତାଙ୍କଠାରୁ ରକ୍ଷା ପାଇବାର ଉପାୟ କାହିଁ ?

ସେକଥା ଆନନ୍ଦ ଚୌକିଦାରକୁ କହି ସେ

ରୁମ୍‌ର ସବୁ ଝର୍କା ବନ୍ଦ କରାଇଲା, ଖାସ କରି ବାଥ୍‌ରୁମ୍‌ର, କାରଣ ସେଠାରେ ବାହାରକୁ ଗୋଟିଏ ଛୋଟ ନାଳଟିଏ ଥିଲା । ତଥାପି ତା' ମନ ଭିତରେ ଆଶଙ୍କା ଉଙ୍କି ମାରୁଥିଲା ସାପକୁ ନେଇ... । ସେଇ ଶାନ୍ତ ଡାକବଙ୍ଗଳାର ନିଛାଟିଆ ପରିବେଶ ଥିଲା । ବେଶ୍ ଏକଲା... । ଉତ୍ତର ଓ ଦକ୍ଷିଣ ଦିଗରେ ବିସ୍ତାରିତ ଘଞ୍ଚ ଜଙ୍ଗଲ, ପୂର୍ବ ଦିଗରେ ଝରଣା ଓ ପଶ୍ଚିମକୁ ଅଜଗର ଭଳି ଶୋଇଥିବା ଅଙ୍କା ବଙ୍କା ଜଙ୍ଗଲୀ ରାସ୍ତା । ମନରେ ଭୟ ସଂଚାର ହେଉଥିଲା ସେଇ ଶୂନ୍‌ଶାନ୍ ଜଙ୍ଗଲରେ କିଛି ଅଘଟଣ ଘଟି ନଯାଉ ବୋଲି ।

କିଛି ଆୱାଜ ଶୁଣିଲେ ମନରେ ଛନକା ପଶି ଯାଉଥିଲା । ଯଦିଚ ବିଗତ ଦିନମାନଙ୍କରେ ଏସବୁ ମୁଁ ଶୁଣୁଥିଲି, ଆଜି କିନ୍ତୁ ଏହା ମୋତେ କେମିତି କେମିତି ଲାଗୁଥିଲା । ବେଳେ ବେଳେ ଲାଗୁଥିଲା ଯେ, ଇନ୍ଦୁ ଆସି ଏଠାରେ ପହଞ୍ଚିଲା ବେଳକୁ ମୋର ଲାଶ୍ ହିଁ କେବଳ ଦେଖିବ... ତା'ହେଲେ ସେ କ'ଣ କରିବ ?... ଆଉ ଯଦି ସେ ନଆସେ ? ତେବେ କ'ଣ କରାଯିବ । ଡାକବଙ୍ଗଳାର ରେଜିଷ୍ଟର୍‌ରେ ତା' ନାଁ ଅଛି । ଏତିକି ଭାବି ସନ୍ତୁଷ୍ଟ ହେବାକୁ ପଡ଼ିଲା ।

ବାହାରେ ଜଙ୍ଗଲୀ ବଣବୁଦା ମଧ୍ୟଦେଇ ପ୍ରବାହିତ ହେଉଥିବା ସାଇଁ ସାଇଁ ପବନ ସାପଭଳି ସୁ ସୁ ଶବ୍ଦରେ ପ୍ରବାହିତ୍ ହେଉଥିଲା ଆଉ ମୋତେ ଲାଗୁଥିଲା ବର୍ଷାଦିନିଆ ଲମ୍ବାଘାସ ଭିତରେ ସାପ ସବୁ ସାଲୁ ସାଲୁ ହୋଇ ଚରୁଛନ୍ତି... ଚଢ଼େଇଟିଏ ଡାକବଙ୍ଗଳାର ପିଣ୍ଡାଯାଏ ଉଡ଼ିଆସି ସିଟି ମାରି ପୁଣି ଉପରକୁ ଉଡ଼ିଗଲା । କାଚ ଝରକା ଦେଇ ସେ ବାହାରକୁ ଦେଖିଲା । ମାଟିଆ ଚାନ୍ଦିନୀର ଚଟାଣରେ ପଡ଼ିଥିବା ଫାଟ ସାପର ଭ୍ରମ ସୃଷ୍ଟି କରୁଥିଲା । ହଠାତ୍ ସେ ଗୋଡ଼ ଉଠାଇନେଲା । ପତଳା କଳା ଛାଇଟେ ତା' ପାଦ ପାଖ ଦେଇ ଚାଲିଗଲା ଭଳି ଲାଗିଲା । ମହମବତୀର ଶିଖାରେ କମ୍ପନ ଅନବରତ ଜାରି ରହିଥିଲା । ସେ ଡେଁପଡ଼ି ଖଟ ଉପରକୁ ଚଢ଼ିଗଲା । ଶୁଣିଥିଲା କାଠ ପଲଙ୍କ ଉପରକୁ ସାପ ଚଢ଼େନା, କିନ୍ତୁ ଏହା ତ ଲୁହାରେ ତିଆରି ପଲଙ୍କ । ମହମବତୀ ଆଉ ଗୋଟିଏ ଜଳାଇ ଶକ୍ତ ଭାବେ ଚଟାଣରେ ଲଗାଇଲା । ସିଗାରେଟ୍ ଜଳେଇ ଏଇ ଭୟାତୁର ବାତାବରଣ ପରେ ବିଜୟ ହାସଲ୍ କରିବାକୁ ଚାହିଁଲା ।

କେବଳ ଆଜି ରାତିକର କଥା । କାଲି ଇନ୍ଦୁ ଆସିଯିବ । ଏଠାରେ ଏକୁଟିଆରୁ ସେମାନେ ହେବେ ଦୁଇ । ଆଉ କିଛି ନୁହଁ । ନା ଇନ୍ଦୁର ନିକଟତର ହବାର ଲାଳସା, ନା ଇନ୍ଦୁକୁ ମନେପକେଇବାର ସ୍ମୃତି । କେବଳ ସାଥୀଟିଏ ପାଇବାର ଇଚ୍ଛା । ଏଭଳି ସାରା ରାତି ବିତିଯିବ । ଗୋଟିଏ ପଟେ ସାପକଥା ଓ ଅନ୍ୟପଟେ ଇନ୍ଦୁର ସ୍ମୃତି । ଭୟ ଓ ପ୍ରେମର ଏକାନ୍ତ ଅନୁଭବ । ଇନ୍ଦୁ ସହ କେବେ ଏମିତି ଏକାନ୍ତ ଭାବେ ସାଥୀ ହେବାର ସୁଯୋଗ ଆସିନି । ତା'ର ଖୁବ୍ ପାଖରେ ବସି... ନିକଟତର ହେବାକୁ କଳ୍ପନା କଲା ମାତ୍ରେ ଇଁ ଦେହରେ ଶିହରଣ ସୃଷ୍ଟି ହେଉଛି । ତାର ସେ ଉଦାସିଆ ସଜଳ ଆଖି ଆଉ ଗାଲ ଉପରେ ଦୋହଲୁଥିବା

କୁଞ୍ଚି କୁଞ୍ଚିଆ ବାଳ । ସେ କେବଳ ତାକୁ ଦେଖିବନି, ହାଲ୍‌କା ଭାବେ ଛୁଇଁବ... କେଜାଣି ଇନ୍ଦୁକୁ କେମିତି ଲାଗିବ, ସେ କ'ଣ କହିବ । କିନ୍ତୁ ଏଥିରେ କହିବାର କ'ଣ ଅଛି... ଏସବୁକୁ କେବଳ ଅନୁଭବ କରାଯାଏ... କିନ୍ତୁ ଯଦି ଇନ୍ଦୁ ନ ଆସେ... କିଛି ଦୁର୍ଘଟଣା ଘଟିଯାଏ... ଦୁର୍ଘଟଣା ଏଇଭଳି ମୁହୂର୍ତ୍ତମାନଙ୍କରେ ହିଁ ଘଟିଥାଏ... ଏବଂ ହଠାତ୍ ବହୁତ କିଛି ହୋଇଯାଏ ।

ଏଇଭଳି ଶଙ୍କାଗ୍ରସ୍ତତା ମଧ୍ୟରେ ମହମବତୀର ଛାଇମାନେ ଲମ୍ବି ଚାଲିଥିଲେ । ନିଜର ଅବସ୍ଥା ପ୍ରତି ତାଚ୍ଛଲ୍ୟ କରି, ସେ ଭାବିଲା ସାହସର ସହ ବଙ୍ଗଳାର ଛାତ ଉପରକୁ ଉଠିଯିବ । ସେ ପ୍ରକୃତିସ୍ଥ ହେଲା । ଦେହରେ ଚଦରଟିଏ ଘୋଡ଼ି ଛାତ ଉପରକୁ ଆସିଲା । ଦଲକାଏ ଥଣ୍ଡା ପବନ ତାକୁ ଗାଧୋଇଦେଲା । ପବନରେ ଭାସି ଆସୁଥିଲା ଏକ ମାଦକ ବାସ୍ନା । ବହୁତ ଦୂର ପର୍ଯ୍ୟନ୍ତ ଉଚ୍ଚ ନୀଚ ବଣବୁଦା ଜ୍ୟୋସ୍ନାରେ ଭିଜି ଯାଇଥିଲେ । ଚାରିଆଡ଼େ ଅଖଣ୍ଡ ନୀରବତାର ରାଜୁତି । ବହୁତ ଦୂର ପର୍ଯ୍ୟନ୍ତ ନଦୀର ପାଣି ଶଙ୍ଖମର୍ମର କାଚ ଭଳି ପ୍ରତୀୟମାନ ହେଉଥିଲା ଆଉ ଦୂର ପାହାଡ଼ର ନିସ୍ତବ୍ଧ ଜଙ୍ଗଲ ଥିଲା ଖୁବ୍ ଚୁପ୍‌ଚାପ୍ ଓ ଶାନ୍ତ । କିଛି ସମୟ ସେ ସେଠି ବସି ରହି ଭାବିଲା... ଏହି ନିର୍ଜନତା ଭିତରେ ସେ ଆଉ ଇନ୍ଦୁ... ବୁଦା ପାଖରେ ଜୁଳୁ ଜୁଳୁ କରୁଥିବା ବିଜୁଳି ପୋକ... ନୀରବତାରେ ଭରା ରାତି... ଇନ୍ଦୁର ଉପସ୍ଥିତି... ସକାଳ ବସରେ ଇନ୍ଦୁ ଆସିବ । ପାଦରେ ଚାଲି ଚାଲି ଡାକବଙ୍ଗଳାଯାଏ ଆସି କହିବ ''ଓଃ ! ସଡ଼କଠାରୁ ଡାକବଙ୍ଗଳା ଅନେକ ଦୂର ।'' ଆଉ ଆସନ୍ତାକାଲି ଠିକ୍ ଏତିକିବେଳେ ସେ ମୋ ପାଖରେ ଏଇ ଜାଗାରେ ବସିଥିବ ଏହି ନିସ୍ତବ୍ଧତା ଓ ନିର୍ଜନତା ଭିତରେ... ଇନ୍ଦୁର ମୁଲାୟମ କାନ୍ଧ ଉପରେ ସେ ହାତ ରଖିବ ଆଉ ଜହ୍ନ କରଣରେ ଇନ୍ଦୁର ମୁଖମଣ୍ଡଳ ଆହୁରି ନରମ ଓ ଆଖି ଆହୁରି ରହସ୍ୟମୟ ଲାଗିବ... ଆଉ ଏଇ ଦିଗନ୍ତ ବିସ୍ତାରତ ଆକାଶ ତଳେ ଇନ୍ଦୁକୁ ପ୍ରଥମ ଥର ପାଇଁ ଆପଣାର କରିନେବ । ସେ ଆକାଶକୁ ଅନେଇଲା । ଟିପି ଟିପି ବାଦଲକୁ ଭିତରେ ନିରେଖି ଦେଖୁଥିଲା ସେ । ମେଘମାନେ କାତି ଛାଡ଼ିଥିବା ସାପର ଖୋଳ ଭଳି ତାକୁ ଲାଗୁଥିଲେ । ଟପ୍ ଟପ୍ ବର୍ଷା ପଡ଼ିଲା, କାଲୁଆ ପବନ ବହିଲା । ସେ ତଳକୁ ଓହ୍ଲାଇ ଆସିଲା । କବାଟ ବନ୍ଦ କଲା । ଦୁଆର କାଚ ପାଖରେ ବର୍ଷା ଟୋପା ପଡୁଥିଲା । ଚଟାଣରେ ଦୁଆର ସନ୍ଧି ପାଖରେ ସାପର ମୁହଁ ଚମକିଲା ଭଳି ଲାଗିଲା ଓ ସେ ଖେଳି ଖେଳି ଆଗକୁ ଚାଲିଆସିଲା ଭଳି ଲାଗିଲା । ତା' ଶରୀର ଝାଳରେ ଭିଜିଗଲା । ଆଲୁଅର ପ୍ରକାଶରେ ସେ ଦେଖିଲା ସାପକୁ... ଦୁଆରରୁ ଆସୁଥିବା ବର୍ଷାପାଣି ଠିକ୍ ସାପଟିଏ ଭଳି ହଲି ହଲି ବାଥ୍‌ରୁମ୍‌ର ନାଳ ପର୍ଯ୍ୟନ୍ତ ପ୍ରସରି ଯାଉଥିଲା । ନିଜ ଉପରେ ତାର ଦୟା ଆସିଲା । ଆରେ ସାପକୁ ଏତେ ଡରିବାରେ କ'ଣ ଅଛି । ଦରକାର ପଡ଼ିଲେ ତାକୁ ମାରିଦେବାର ସାହସ ତ ତା'ର ଅଛି । ସବୁ କବାଟ ଝରକା ଖୋଲି ମହମବତୀ ଲଗେଇ ଶୋଇପଡ଼ିଲା । ରାତିରେ ସ୍ୱପ୍ନରେ ସେ ଦେଖିଲା ସାପମାନେ ଗଛରେ ଝୁଲି ଦୋଳି ଖେଳୁଛନ୍ତି । ନଦୀ

ଭିତରେ ଭାସି ଯାଉଛନ୍ତି ଓ ଘାସ ଭିତରେ ଆଗକୁ ଆଗକୁ ମାଡ଼ି ଚାଲିଛନ୍ତି ।

ସକାଳୁ ଉଠିଲା । ଚୌକିଦାରକୁ ଚା' ପ୍ରସ୍ତୁତ କରି ରଖିବାକୁ କହି ଇନ୍ଦୁକୁ ଆଣିବା ପାଇଁ ରାସ୍ତାଯାଏ ଚାଲିଲା । ରାସ୍ତାରେ କେହି ଦଳି ମକଚି ଦେଇଥିବା ମଲା ସାପଟେ ଦେଖିଲା । ଭାବିଲା ରାତିରେ ଝର୍କା କବାଟ ଖୋଲି ଶୋଇବା ଦ୍ୱାରା ସେ ବିପଦକୁ ଟାଣି ଆଣିଥିଲା । ଫେରିଲାବେଳେ ଇନ୍ଦୁ ଏହାକୁ ଦେଖିଲେ ନିଶ୍ଚେ ଡରରେ ଚିର୍‌ଚିରେଇ ଉଠିବ-

ଶେଷରେ ଇନ୍ଦୁ ଆସିଗଲା । ତା'ର ଢଳ ଢଳ ଆଖିରୁ ହସ ଉକୁଟି ଆସୁଥିଲା ଓ ତା' ବାଳ ଖୋଲା ଥିଲା । କାନ ମୂଳରେ କୁଞ୍ଚିକୁଞ୍ଚିଆ ବାଳ କେରାଏ ଉଡୁଥିଲା ଓ ତା' ଓଠ ରହି ରହି ବସି ରହିଥିବା ପ୍ରଜାପତି ଭଳି ମଝିରେ ମଝିରେ କମ୍ପି ଉଠୁଥିଲା । ପ୍ରେମାନୁଭୂତି କେବଳ ପରିସ୍ଥିତି ଜନିତ ସୌନ୍ଦର୍ଯ୍ୟାନୁଭୂତିରୁ ହିଁ ଉତ୍ପନ୍ନ ହୋଇଥାଏ । ସେ ଭବିଷ୍ୟତର ସୁନ୍ଦର ସ୍ୱପ୍ନକୁ ନେଇ ସେ ଥିଲା ପାଗଳ । ସେ ଭାବୁଥିଲା ଇନ୍ଦୁକୁ ନଦୀ ଉପରେ ଲମ୍ବିଥିବା ପୋଲ ଉପରକୁ ପ୍ରଥମେ ନେଇଯିବ ଏବଂ ଇନ୍ଦୁ ନଇଁପଡ଼ି ସେଇ ଭୀଷଣ ଗଭୀରତାକୁ ଦେଖିବ । ସେ ମଜାରେ ଡରେଇଦେବ ଓ ଇନ୍ଦୁ ଚମକିପଡ଼ି ତାକୁ କୁଣ୍ଢେଇ ଧରିବ... ପୁଣି ଦୁହେଁ ସେଠି କିଛି ସମୟ ବସି ବିତେଇବେ । ପୁଣି ସେ ଭାବୁଥିଲା ଇନ୍ଦୁକୁ ସେ ସେଇ ଗଛ ପାଖକୁ ନେଇଯିବ ଯେଉଁଠି ମହୁଫେଣା ଓହଳି ରହଛି ଓ ଭାଲୁ ମହୁ ଖାଇବାକୁ ସେଇ ଗଛ ଉପରେ ଚଢ଼ିଥିଲା ବୋଲ ତାକୁ ଶୁଣାଇବ । ଇନ୍ଦୁ ଆଶ୍ଚର୍ଯ୍ୟଚକିତ ହୋଇ ପଚାରବ, ''ତୁମେ କ'ଣ ସତରେ ଦେଖିଛ ?'' ଏମିତି କେତେ କ'ଣ ସେ ଭାବୁଥିଲା ।

ପୁଣି ବର୍ଷା ହେଲେ ସେ ଭାବୁଥିଲା ଇନ୍ଦୁକୁ ବାଉଁଶବାଡ଼ି ଆଡ଼କୁ ନେଇଯିବ ଓ ତାକୁ ବର୍ଷାରେ ଭିଜେଇଦେବ । ଭିଜିଗଲେ ଇନ୍ଦୁ ଖୁବ୍ ସରମେଇ ଯିବ... ତା' ଲୋମମୂଳ କଣ୍ଟାଭଳି ଛିଡ଼ା ହୋଇଯିବ ଓ ତା' ଦେହର ନକ୍ସା ବର୍ଷା ପାଣିରେ ଭିଜି ଶଙ୍ଖ ମର୍ମର ମୂର୍ତ୍ତିସମ ପ୍ରତୀୟମାନ ହେବ । ବାଉଁଶବାଡ଼ିରେ ବର୍ଷୁଥିବା ବର୍ଷାର ଉନ୍ମାଦିତ ସଙ୍ଗୀତରେ ସେ ଦୁହେଁ ଦୁହିଁଙ୍କୁ ପିଆସୀ ଆଖିରେ ଦେଖିବେ ଏବଂ ପାଖାପାଖି ବସି ରହିବେ ।

ତା'ପରେ ଆସିବ ସନ୍ଧ୍ୟା ଘେରିଯାଇଥିବା ନିସ୍ତବ୍ଧ ଅନ୍ଧକାର ମଧ୍ୟରେ ସେ ଇନ୍ଦୁକୁ ଝରକା ପାଖକୁ ନେଇଯିବ ଓ ନିଃସଂକୋଚରେ ନିଜ କାନ୍ଧ ଉପରେ ତା' ମୁଣ୍ଡ ରଖି ତାକୁ ସେଇ ଜାଗାଗୁଡ଼ିକୁ ଦେଖାଇବ, ଯେଉଁଠି ବସି ସେ ସବୁବେଳେ ତାକୁ ମନେ ପକାଉଥିଲା । ଇନ୍ଦୁ ପ୍ରେମଭରା ଦୃଷ୍ଟିରେ ତାକୁ ଚାହିଁବ, ପାଖକୁ ଲାଗି ଆସିବ ଓ ଝରଣାର ଝର୍ଝର ନାଦରେ ନିଶବ୍ଦ ଅନ୍ଧାରର ଶୂନ୍ୟତା ଭିତରେ ସେ ଇନ୍ଦୁକୁ ପ୍ରଥମ ଥର ପାଇଁ ଚୁମ୍ବନ ଆଙ୍କିବ.... ଆଉ ସେ ପ୍ରେମ କରିବା ମାତ୍ରେଇ ଆକାଶରେ ଜହ୍ନ ଓ ତାରାମାନେ ଛିଟିକି ପଡ଼ିବେ... ଉନ୍ମୁକ୍ତ ଧରିତ୍ରୀ ଓ ଫାଙ୍କା ଆକାଶ ମଧ୍ୟରେ ଭଲ ଓ ମନ୍ଦର ସମସ୍ତ ଦୂରତ୍ୱ ସମାପ୍ତ ହୋଇଯିବ... ସେଠାରୁ ସେ ଇନ୍ଦୁକୁ ଝଲମଲ କରୁଥିବା ଜହ୍ନ ତାରାଙ୍କର ଛାଇ ମଧ୍ୟରେ ଡାକବଙ୍ଗଳାର ଛାତ ଉପରକୁ ନେଇଆସିବ ଏବଂ ଦୁହେଁ ବସି ନିଜ ଜୀବନର ସ୍ୱପ୍ନସବୁକୁ ବୁଣି ଚାଲିବେ...

ଇନ୍ଦୁ ଆସିଲା । ସବୁକିଛି ଠିକ୍ ସେମିତି ହେଲା, ଯେମିତି ସେ ଭାବିଥିଲା । ଚାହା ପିଇବା ପରେ ଖରାରେ ସେହି ମହୁଫେଣା ଓହଳିଥିବା ଗଛ ପାଖକୁ ଇନ୍ଦୁକୁ ସେ ନେଇଗଲା । ଆଉ ସତକୁ ସତ ବର୍ଷା ବର୍ଷିଲା ଓ ସେ ଇନ୍ଦୁକୁ ସେହି ବାଉଁଶବାଡ଼ିକୁ ଆନନ୍ଦରେ ଟାଣି ଟାଣି ନେଇଗଲା । ବର୍ଷରେ ଭଜି ଭିଜି ଇନ୍ଦୁ ଠିକ୍ ସେମିତି ଲାଗୁଥିଲା । ଯେମିତି ସେ କଳ୍ପନା କରିଥିଲା । ସବୁକିଛି ସେଇମିତି ସଂଘଟିତ ହେଲା ଯେମିତି ସେ କଳ୍ପନାରେ ଭାବିଥିଲା ।

ଆଉ ସେ ଅପେକ୍ଷା କରୁଥିଲା ସନ୍ଧ୍ୟାର ଆଗମନକୁ । ସେଇ ସନ୍ଧ୍ୟା ବି ଆସିଲା ।

ଇନ୍ଦୁ ଏକା ଏକା ଝରଣା ଆଡ଼କୁ ଆଗେଇ ଚାଲିଥିଲା ଯେମିତି ଏ ଜାଗା ସହ ସେ ବେଶ୍ ପରଚିତ । ଲାଗୁଥିଲା ଯେମିତି ତା'ର ନୂଆ ପର ଗଜୁରି ଉଠିଛି । ଆକାଶରୁ ଅନ୍ଧାର ଓହ୍ଲେଇ ଆସୁଥିଲା ପୃଥିବୀ ଉପରକୁ ଆଉ କଣ୍ଟାବୁଦାରେ ଲାଗି ଯାଇଥିବା ନିଜ ଶାଢ଼ୀର ପଣତକୁ କାଢ଼ିନେଇ ଇନ୍ଦୁ ଗୋଟିଏ ପଥର ଉପରେ ଛିଡ଼ା ହୋଇ ଯାଇଥିଲା । ଆଉ ଶଙ୍କାଗ୍ରସ୍ତ ହୋଇ କହୁଥିଲା, ''ଘାସ ଉପରେ ଚାଲିବାକୁ ଭାରି ଡର ଲାଗୁଛି, କେଉଁଠି ଯଦି ସାପ-ବେଙ୍ଗ ଥିବେ.... ଦେଖାବି ଯିବେନି...'' ଆଉ ଭୟଗ୍ରସ୍ତତା ଭିତରେ ତା'ର ଆଖି ଡବ ଡବ ହୋଇ ଯାଉଥିଲା । ଶିହରିତ ହୋଇ ଘାସ ଭିତରୁ ନିଜ ଗୋଡ଼ କାଢ଼ିନେଇ ଚମକିପଡ଼ି ଆନନ୍ଦ କହିଲା, ''ତୁମେ ଭାରି ଡରକୁଳ ।''

''ମୋ ସାଥିରେ ଚାଲ'', ଅବୋଧ ଶିଶୁଟିଏ ଭଳି ଇନ୍ଦୁ କହିଲା ଓ ଆନନ୍ଦ ପାଖକୁ ଯାଇ ତା' ହାତ ଧରିନେଲା । ଆନନ୍ଦ ଶିହରିତ ହେଉଥିଲା ଓ କେତେ କ'ଣ ଗପି ଗପି ସେମାନେ ଝରଣାକୂଳକୁ ଆସି ଯାଇଥିଲେ । ଇନ୍ଦୁ ବନସୌନ୍ଦର୍ଯ୍ୟରେ ବିଭୋର ହେଇଉଠୁଥିଲା । ସନ୍ଧ୍ୟାର କଳା ଅନ୍ଧାରର ପତଳା ପର୍ଦ୍ଦା ସମଗ୍ର ଜଙ୍ଗଲ ଉପରେ ଆବୃତ୍ତ ହୋଇ ଆସୁଥିଲା । ସ୍ୱପ୍ନିଳ ବନ ଅନ୍ଧାରର ଦୃଶ୍ୟ ଥିଲା ଖୁବ୍ ମାଦକଭରା । ଝରଣାର ନାଦ ମଧ୍ୟରେ ଦଣ୍ଡାୟମାନ ପାହାଡ଼ର ପ୍ରାଚୀର ଦେହରେ ଘନ ସବୁଜିମାର ଛିଟା ଜଳଦର୍ପଣରେ ଅସ୍ପଷ୍ଟ ହୋଇ ଆସୁଥିଲା । ଆଉ ଇନ୍ଦୁ ଶିହରିତ ହୋଇ ଚାହିଁଥିଲା ପ୍ରକୃତିର ଏଇ ଅପରୂପ ଦୃଶ୍ୟରାଜିକୁ । ତନ୍ମୟ ହୋଇ ଛିଡ଼ା ହୋଇଥିବା ଇନ୍ଦୁ ପିଠିରେ ହାତ ରଖି ଆନନ୍ଦ ମଧ୍ୟ ନିଜକୁ ଭୁଲି ଯାଇଥିଲା । କପାଳ ଉପରୁ କୁଞ୍ଚିତ କେଶଗୁଡ଼ିକୁ ହଟେଇ ନେଇ ଇନ୍ଦୁ ସ୍ୱପ୍ନିଳ ସ୍ୱରରେ କହିଲା, ''କେତେ ଶାନ୍ତ ଓ ସୁନ୍ଦର ଏ ଜାଗା ।''... ଆନନ୍ଦ କେବଳ ଇନ୍ଦୁକୁ ଦେଖୁଥିଲା... ସତରେ ଇନ୍ଦୁ କେତେ ଶାନ୍ତ ଓ ସୁନ୍ଦର... । ଇନ୍ଦୁ ନିଜର ଅଜାଣତରେ ନଜ ଅଙ୍ଗୁଳିଗୁଡ଼ିକୁ ଆନନ୍ଦର ହାତ ଭିତରେ ଛନ୍ଦି ଦେଉଥିଲା । ସେହି ପାହାଡ଼ର ଚଟାଣକୁ ଦେଖାଇ ଇନ୍ଦୁକୁ ନିଜ ପାଖକୁ ସେ ଆଉଜେଇନେଲା । ଆଉ କହୁଥିଲା ଯେ କେଉଁ ଚଟାଣ ଉପରେ ସେ କେବେ ବସି ଇନ୍ଦୁକୁ ମନେ ପକାଉଥିଲା । ତାକୁ ଲାଗୁଥିଲା ତା'ର ଯେମିତି ଆହୁରି ଅନେକ କିଛି କହିବାର ଥିଲା, ଯାହାକୁ ତାର ନିଜ ମନରେ ସେ ଚାପି ରଖିଛି । ତଳେ ପାଣିକୁ ଦେଖାଇ ସେ କହୁଥିଲା, ''ଆନନ୍ଦ ! ଦେଖ, ଯେମିତି ପାଣି ତଳେ ଭାଟିରେ ନିଆଁ ଲାଗିଛି । ଫେଣର ଶିକୁଳି

କେମିତି ସୃଷ୍ଟି ହେଉଛି ଦେଖ । ଆନନ୍ଦ ଇନ୍ଦୁର କାନ୍ଧରେ ଭରାଦେଇ ତା' ପାଖରେ ବସି ଇନ୍ଦୁକୁ ଦେଖୁଥିଲା ଯେମିତି୍ ଉଚ୍ଛୁଳି ପଡୁଥିବା କଳ କଳ ଜଳସ୍ରୋତକୁ ସେ ଦେଖୁଛି । ଆନନ୍ଦାନୁଭୂତିରେ ଆତ୍ମହରା ଇନ୍ଦୁ କହୁଥିଲା ''ଉତୁରି ପଡୁଥିବା ସାଗୁଦାନା କି ସତେ... ଅଥବା ସାପର କାତିଭଳି ଏ ଫେଣର ଆକାର... ଆନନ୍ଦ ସ୍ତବ୍ଧ ହୋଇ ଦେଖୁଥିଲା ଫେଣର ସୌନ୍ଦର୍ଯ୍ୟକୁ ଯେମିତି ପୃଥିବୀପୃଷ୍ଠ ଫାଟିଯାଉଛି ଏବଂ ଅନେକ ଧବଳ ସର୍ପ ଫଣାଟେକି ତା' ଭିତରୁ ଉପରକୁ ଉଠି ଆସୁଛନ୍ତି... ଏବଂ ଜଳଧାର ମଧ୍ୟରେ ଅଦୃଶ୍ୟ ହୋଇ ହ୍ରଦ ମଧ୍ୟରେ ପଡ଼ିଯାଉଛନ୍ତି ଏବଂ ସମଗ୍ର ବାତାବରଣରେ ବ୍ୟାପି ଯାଉଛି ଫୁତ୍କାର ସେହି ସାପମାନଙ୍କର ।

ଇନ୍ଦୁ ଏହା ଭିତରେ ଆନନ୍ଦର ଛାତିରେ ମଥା ରଖିଥିଲା । ତା' ହାତ ପାପୁଲିର ବନ୍ଧନ ଧୀରେ ଧୀରେ ଶକ୍ତ ହୋଇ ଆସୁଥିଲା । ମସୃଣ ପଥର ଉପରେ ଇନ୍ଦୁର ରେଶମୀ ଶାଢ଼ୀ ଖସିଖସି ଯାଉଥିଲା ବେଳେ ଲାଗୁଥିଲା ଯେମିତି ସାପଟିଏ ସର୍ ସର୍ ହୋଇ ତା' ଦେହରେ ଚାଲିଯାଉଛି । ...ସେ ପଛକୁ ଦେଖିଲା, ମାତ୍ର କେଇଗଜ ଦୂରରେ ଦୁଇଟି ଚଟାଣ ମଧ୍ୟରେ କଣ୍ଟା ବୁଦାଟିଏ ଠିଆ ହୋଇଛି । ଇନ୍ଦୁ ମୁହଁ ଟେକି ତା' ଆଡ଼କୁ ଚାହିଁଲା । ତାର ଅଙ୍ଗୁଳି ଗୁଡ଼ିକ ଧୀରେ ଧୀରେ ଇନ୍ଦୁର ପାପୁଲି ଭିତରେ ଶକ୍ତ ହେଇଉଠିଲା । ଦଲକାଏ ପବନ ସର୍‌ସର୍ ହୋଇ ପ୍ରବାହିତ ହେଲା ଓ ପାଣିର ଛିଟିକାରେ ତାର ଆଖି ଲାଗି ଆସୁଥିଲା । ଆନନ୍ଦ ଇନ୍ଦୁକୁ ଅତ୍ୟନ୍ତ ଗଭୀର ଦୃଷ୍ଟିରେ ଥରଟିଏ ଦେଖିଲା ଏବଂ ଯେମିତି ଆଶ୍ୱସ୍ତ ହେବାପାଇଁ ଚାରିଆଡ଼େ ନଜର ପକେଇଲା... କୌଣସି ପକ୍ଷୀ.... କି କୌଣସି ଦୃଷ୍ଟି ନିରେଖୁ ନାହାନ୍ତି ତ ?

ସାମ୍ନାରେ ଠିଆ ହୋଇଥିବା ଚଟାଣ ଉପରେ ତା' ଦୃଷ୍ଟି ନିବଦ୍ଧ ଥିଲା । ଯାହାର ଦେହରେ ମୋଟା ମୋଟା ଗଛର ଗଣ୍ଡି ଅଜଗର ଭଳି ଲାଖି ରହିଥିଲା । ଶରୀର ସ୍ୱେଦସିକ୍ତ ହୋଇ ଉଠୁଥିଲା... ଭୟ ଏବଂ ରୋମାଞ୍ଚର ଫେଣ୍ଟାଫେଣ୍ଟି ଭାବାବେଗ ତାକୁ ଘେରି ନେଉଥିଲା... ପୁଣି ସେ ଥରଟିଏ ଇନ୍ଦୁକୁ ଦେଖିଲା, ଆହୁରି ଆଗେଇ ଆସିଥିଲା ଇନ୍ଦୁ, ପୁଣି ସେ ପଛକୁ ଦେଖିଲା... ପଛରେ ଚଟାଣ ଦେହରେ ଠିକ୍ ଯେମିତି ଅଜଗରମାନେ ଲାଖି ହୋଇ ରହିଥିଲେ ଏବଂ ଅନ୍ଧକାରରେ ପାହାଡ଼ର ପାଟ ଦେହରୁ ଯେମିତି ସେମାନଙ୍କର ଶତ ଫୁତ୍କାରର ସୁ ସୁ ଶବ୍ଦ ଲହରେଇ ଆସୁଥିଲା... ଅର୍ଦ୍ଧଶାୟିତ ଆନନ୍ଦକୁ ପିଠ ପଛରେ ସର୍ ସର୍ ଲାଗିଲା ଯେମିତି କୌଣସି ସାପଟିଏ ଚାଲିଯାଉଛି । ଘାବରେଇ ଯାଇ ହାତପଛକୁ ନେଲାବେଳେ ଇନ୍ଦୁର ରେଶମୀ ବାହୁପାଶରେ ଛନ୍ଦିଗଲା... ସେ କିଛିଟା ଆଶ୍ୱସ୍ତ ହେଲା... ଯେମିତି୍ ଆଖପାଖର ସମସ୍ତଙ୍କୁ ସେ ଭୁଲି ଯାଇଥିଲା... ଧୀରେ ଧୀରେ ଇନ୍ଦୁର ଜୁଡ଼ା ଖୋଲିଦେଇ ସେ ତାର କେଶକୁ ବିଛେଇଦେଲା... ଅତ୍ୟନ୍ତ ମାଦକ ବାସ୍ନା ମହକୁ ଥିଲା... ଯେମିତି କସ୍ତୁରୀ ମହକି ଉଠୁଛି । ସେ ତା ମଥାତଳେ ହାତ ରଖି ଦେଇଥିଲା... କେଶଜାଲ ସେମିତି ବିପର୍ଯ୍ୟସ୍ତ ହୋଇ ବିଛେଇ ହୋଇଥିଲା...

ସେ ଇନ୍ଦୁକୁ ଦେଖିଲା ଓ ଇନ୍ଦୁ ତାକୁ । ଆଉ ଦୁଇଜଣଙ୍କର ନିଃଶ୍ୱାସପ୍ରଶ୍ୱାସର ଗତି ଏକ ହୋଇ ଆସୁଥିବା ବେଳେ ତା' ପଛରେ ଯେମିତି କେହି ଜଣେ ପତଳା ଛୁଞ୍ଚ ଭଳି ଦାନ୍ତ ମାରିଦେଲା... ଆଉ ସେଇ ଦ୍ୱିଗୁଣିତ ତନ୍ଦ୍ରା ମଧ୍ୟରେ ସେ ଦେଖିଲା- ଏକ ପତଳା ସାପଟିଏ ଖସିଯାଇ ଶାଢ଼ୀ ଭିତରେ ପଶିଗଲା...

ସାପ... ସେ ଚିତ୍କାର କରି ଉଠିଲା ।

ଇନ୍ଦୁ ଘାବରେ ଯାଇ ଉଠି ଛିଡ଼ାହେଲା ।

ଆଉ ଆନନ୍ଦ ବିଷର ସଂଜ୍ଞାହୀନତା ମଧ୍ୟରେ ସେମିତି ଛିଡ଼ା ହୋଇଥିଲା । ଯେମିତି ତା' ଶରୀରରେ ବିଜୁଳିର ଲହରୀ ଖେଳି ଯାଉଥିଲା... ଭିତରର ପ୍ରତ୍ୟେକ ଧମନୀ ଯେମିତି ଫାଟି ପଡୁଥିଲା । ସେ ଇନ୍ଦୁକୁ କହିବାକୁ ଚାହୁଁଥିଲା ''ମୋତେ ସାପ କାମୁଡ଼ିଛି ଇନ୍ଦୁ ।'' କିନ୍ତୁ ନିଜକୁ କୌଣସି ପ୍ରକାରେ ସମ୍ଭାଳିନେଇ କେବଳ ଡାକବଙ୍ଗଳା ପର୍ଯ୍ୟନ୍ତ ଯିବାକୁ ଚାହୁଁଥିଲା । ''ମୋତେ ଧରିନିଅ ଇନ୍ଦୁ । କେଜାଣି କେମିତି କେମିତି ଲାଗୁଛି''... ଆନନ୍ଦ କହିଲା ଓ ଇନ୍ଦୁ ସହ ଚାଲିବାରେ ଲାଗିଲା । ତା' ଶରୀରର ସମସ୍ତ ରକ୍ତ ଯେମିତି ପାଣି ଫାଟି ଯାଉଥିଲା ଓ ଝାଳ ସର୍ ସର୍ ହୋଇ ବୋହିଯିବାରେ ଲାଗିଥିଲା । ଆଉ ଧମନୀରେ ସତେ ଯେମିତି ବିଷ ବଢ଼ି ବଢ଼ି ଚାଲିଥିଲା...

ଘର ଭିତରକୁ ଆସିବା ମାତ୍ରେ ନିଜ ବାହୁରେ ଝାଳ ପୋଛିନେଇ ସେ ବିଛଣା ଉପରେ ପଡ଼ିଗଲା । ଇନ୍ଦୁର ଚେହେରାରେ ଅସ୍ତ ବ୍ୟସ୍ତତା ଫୁଟି ଉଠୁଥିଲା । ସେ ତା' ମଥା ଉପରେ ହାତରଖି ପଚାରୁଥିଲା ''କ'ଣ ହେଲା ଆନନ୍ଦ... ତୁମେ ଏତେ ଘାବରେଇଗଲ କାହିଁକି ?''

ଆନନ୍ଦ ଅନୁଭବ କଲା ସେ ଯେମିତି ଆହୁରି ନୀଳ ପଡ଼ିଯାଉଛି । ସେହି ଅସ୍ତବ୍ୟସ୍ତତା ମଧ୍ୟରେ ସେ କହିଲା, ''ଚୌକିଦାରକୁ ଡାକିଦିଅ ଇନ୍ଦୁ । ପାଖରେ କୌଣସି ହସ୍ପିଟାଲ ମଧ୍ୟ ନାହିଁ, ମୋତେ ସାପ କାମୁଡ଼ି ଦେଇଛି ।''

''କେଉଁଠି ?'' ଭୟାର୍ତ୍ତ ସ୍ୱରରେ ଇନ୍ଦୁ ପଚାରିଲା, ସେ ପଛରେ ନିଜ ପିଠି ଆଡ଼କୁ ଇଶାରା କଲା । ଇନ୍ଦୁ ତାକୁ ପେଟେଇ ପଡ଼ିବାକୁ କହିଲା ଆଉ ଯାହା ଦେଖିଲା ଜୋର୍‌ରେ ହସିବାକୁ ଲାଗିଲା । ସାର୍ଟ ଦେହରେ ଇନ୍ଦୁର ଏକ ହେୟାରପିନ୍ ଲାଗିହୋଇ ରହିଥିଲା ।

ଇନ୍ଦୁ ପିନ୍‌ଟିକୁ କାଢ଼ି ଆନନ୍ଦ ହାତରେ ଧରେଇଦେଲା ଏବଂ ହସି ହସି ନିଜର ଫିଟିଯାଇଥିବା ଜୁଡ଼ା ବାନ୍ଧିବାରେ ଲାଗିଲା ।

# ଜହ୍ନରାତିରେ, ବନ୍ନୋ,
# ଫୁଙ୍ଗୁଳା ଦେହରେ...

ମୁଁ ଭିଓ୍ୱଣ୍ଡି ପହଞ୍ଚିବା ବେଳକୁ ଦଙ୍ଗା ସରିବାର ଦଶଦିନ ହୋଇଥାଏ । ପଶୁ ପଶୁ ବସ୍ତିରେ ସ୍ଥାନେ ସ୍ଥାନେ କଳା କଳା ଦରଜଳା ସ୍ଥାନ ଦେଖିଥିଲି । କେତେକ ଦରଜଳା ଘର ଗୋଟେ କଳାରଙ୍ଗର ଅଗଣା, ପୁଣି ଧାଡ଼ିକୁ ଧାଡ଼ି ଭଙ୍ଗା ଘର ।

ଉଡୁଥିବା ପାଉଁଶ ଓ ଅଙ୍ଗାରର ବାସ୍ନା ଏବେ ନଥିଲା । ଅଙ୍ଗାରର ମହକ ଅଲଗା, ଶେଷ ହେଇଯାଇଥିବା ଏକ ଚିତ୍କାର ଭଳି । ଯାହା ବେଶ୍ କିଛି ସମୟ ଯାଏ ଦେହ ମଧ୍ୟରେ ପ୍ରବେଶ କରି ବଜାୟ ରହେ ।

ଶୁଣ, ତୁମେ ତ ଏଇ ବାସ୍ନାକୁ ନିଶ୍ଚେ ଅନୁଭବ

କରିଥିବ, ଏମିତି କିଏ ଏ ଦେଶରେ ଅଛି ଯିଏ ଏ ବାପ୍ପାଙ୍କୁ ଜାଣିନାହିଁ । ମୁଁ ଯେତେବେଳେ ଏମ୍.ଟି. ଷ୍ଟାଣ୍ଡ (ବସ୍‌ଷ୍ଟାଣ୍ଡ)ରେ ଓହ୍ଲେଇଲି ସନ୍ଧ୍ୟା ହେଇ ଆସୁଥିଲା । ଦଙ୍ଗାର ଭୟଗ୍ରସ୍ତତା ଆଉ ନଥିଲା । ସେଇଠି, ଯେଉଁ ଯାଗାରେ ସିନେମା ପୋଷ୍ଟର ଲାଗିଥିଲା, ଦି' ତିନିଜଣ ପୋଲିସ ଛିଡ଼ା ହେଇଥିଲେ । ବସ୍ ସବୁ ପ୍ରାୟ ଖାଲି ଛିଡ଼ା ହେଇଥିଲେ । ସଙ୍ଗମନେର୍, ଅଲବାଗ୍, ଭୀର୍‌ବାଡ଼ା କିମ୍ବା ସିନ୍ନର୍ ଯାଉଥିବା ବସ୍ କଥା ଛାଡ଼, ଶିର୍‌ଡ଼ି ଯିବାପାଇଁ ବି କେହି ଯାତ୍ରୀ ନଥିଲେ ।

ବସ୍‌ଷ୍ଟାଣ୍ଡର ଟିଣ ଛାତ ତଳେ ଆଉ ଚାରି ପାଞ୍ଚ ଜଣ ପୋଲିସ ଭେଟହେଲେ । ବୁଲାଟିଆଙ୍କ ଭଳି ଗୋଟେ ଯାଗାରେ ଆବଶ୍ୟକୀୟ ଜିନିଷପତ୍ର ରଖି ବସିଥିଲେ । ଯଦି ତାଙ୍କ ବନ୍ଧୁକ ସବୁ ଆଖୁଦଣ୍ଡ ଭଳି ଗୋଟେ ଜାଗାରେ ଗଦାହେଇ ନଥାନ୍ତା, ତେବେ ସେମାନଙ୍କୁ ପୋଲିସ ବୋଲି ଜାଣିବା କଷ୍ଟକର ଥିଲା ।

ଦୁଇଟିଯାକ ସଡ଼କ ଥିଲା ଖୁବ୍ ଫାଙ୍କା । କଲେକ୍ଟର ଯେଉଁ ଡାକବଙ୍ଗଳାରେ ରହୁଥିଲେ କେତେକ ଲୋକ ଚାଲ୍‌ବୁଲ୍ କରୁଥିଲେ । ଥାନେ- କଲ୍ୟାଣ ଯିବାପାଇଁ କୌଣସି ଟ୍ୟାକ୍ସି ବି ସେଠି ନଥିଲା ।

ଦଙ୍ଗାଗ୍ରସ୍ତ ଅଞ୍ଚଳ ଦେଇ ଗଲାବେଳେ କେମିତି ଲାଗେ, ହୁଏତ ତୁମେ ଜାଣିଥିବ, କିନ୍ତୁ ମୋର ସଠିକ୍ ଧାରଣା ନଥିଲା । ଗୋଟେ ବିଶେଷ ଧରଣର ନିସ୍ତବ୍ଧତା... କିମ୍ବା ହା ହୁତାଶା... । ଫାଙ୍କା ଫାଙ୍କା ରାସ୍ତା ଆଉ ଖାଲି ଶୂନ୍ୟତାର ରାଜୁତି ଯେମିତି କେହି କେହ କିଛି ଦେଖି ନ ଦେଖିଲା ଭଳି... ଆଉ ଯଦି ଦେଖୁଥାଏ ତ ମାନବୀୟ ସମ୍ବେଦନା ବିନା ଦେଖୁଥିବା ଭଳି ପ୍ରାୟ... ଏମିତି କାହିଁକି ସବୁ ଘଟେ ? ଦୟା ଓ କରୁଣାର ଏଇମିତି ମୃତ୍ୟୁ ହୁଏ କାହିଁକି ? କାହିଁକି ବିଶ୍ୱାସ ଏତେ ଶୀଘ୍ର ସମାପ୍ତ ହୋଇଯାଏ ? ହିନ୍ଦୁମାନେ ଏହା କ'ଣ କରିଥିଲେ ?... କ'ଣ ଏମିତି ଶୂନ୍ୟତା ଭିତରେ କୌଣସି ମଣିଷ ବଞ୍ଚିବା ସମ୍ଭବ ?

ଏଇ ପରିସ୍ଥିତିରେ ଛୋଟ ଗାଁଟିରେ ବି 'ୱାଜେ ମହଲା'ର ଠିକଣା ପଚାରିବା ମୋ ପାଇଁ କଷ୍ଟକର ହେଲା । ଯାହାବି ହେଉ, ଘର ବି ପାଇଗଲି । କିନ୍ତୁ ସେ ଘର ଥିଲା ଖୁବ୍ ନୀରବ ଶୂନ୍‌ଶାନ୍ ।

ହଁ ଜାଣିଥିଲି ବନ୍ନୋ, ଡ୍ରିଲ୍ ମାଷ୍ଟରବାବୁ । ତୁମ ସ୍ୱାମୀ ମୁନୀର୍- ସମସ୍ତେ ଏଇଠି ଥିବେ । ଆମ ଘର ଲୋକମାନେ ବି ଥିବେ । କିନ୍ତୁ ଘରର ଉପରଭାଗ ଥିଲା ଖୁବ୍ ଅନ୍ଧାର । ଜହ୍ନରାତି ହେଇ ନଥିଲେ ମୁଁ ଖୁବ୍ ଘାବରେଇ ଯାଇଥାଆନ୍ତି ।

ପ୍ରକୃତରେ ମୁଁ କ୍ଷଣକ ପାଇଁ ଚିନ୍ତାକଲି, ମୁଁ ଯଦି ଚୁନାର୍ ଛାଡ଼ି ଯାଇନଥାନ୍ତି, ହୁଏତ ସେଠାକାର ପରିସ୍ଥିତି ଏଇମିତି ହିଁ ହେଇଥାଆନ୍ତା । ବନ୍ନୋ ପୁଣି ତୁମ କଥା ମନେ ପଡ଼ିଲା । ତୁମ ସାମ୍ନାକୁ କେମିତି ଆସିବି, ଦେହରେ ପ୍ରବାହିତ ହେଇ ଚାଲିଥିବା ରକ୍ତ ଶିଥିଳ ହେଇ ଆସିଥିଲା । ମୁଁ ଯେମିତି ଚୁନାର୍‌ର ସେଇ ଗଳି ଉପଗଳିକୁ ଆସିଯାଥିଲି । ପୁଣି ଅତୀତରେ

ସେଇ ବିତିଯାଇଥିବା ବୟସକୁ ସାଥିରେ ନେଇ....

ଘରର ଦୁଆର ମୁକୁଳା ଥିଲା । ମୁଁ ଧୀରେ ଧୀରେ ଘର ଭିତରକୁ ପାଦ ବଢ଼ାଇଲି । ଛୋଟ ଅଗଣାଟିଏ । ଅଗଣାର ଗୋଟେ କୋଣରେ ଦୁଇ ତିନିଟି କଳସୀ । ସେଇଠି ପାଖରେ ଦୁଇଟି ପତଳା ଛାଇ । ଦୁଜଣ ସ୍ତ୍ରୀଲୋକ । ଜଣେ କମର ଯାଏ ଥିଲା ଫୁଙ୍ଗୁଳା । ଦ୍ୱିତୀୟ ସ୍ତ୍ରୀଲୋକ ଜଣକ ତା' ପାଖରେ ବସି ବାରମ୍ବାର ତା' ଗଳାଯାଏ ହାତ ନେଇ ଯାଉଥିଲା ଏବଂ ଫୁଙ୍ଗୁଳା ଛାତିରୁ ପୁଣି ଅଣ୍ଟା ପର୍ଯ୍ୟନ୍ତ ନେଇ ଆସୁଥିଲା । ସେ କ'ଣ କରୁଚି କିଛି ଜଣାପଡୁ ନଥିଲା । କିନ୍ତୁ ଜଣେ ସ୍ତ୍ରୀ ଲୋକର ଫୁଙ୍ଗୁଳା ପିଠି ହିଁ ଦେଖାଯାଉଥିଲା । ସେ ଦୁଇଜଣ ସ୍ତ୍ରୀଲୋକ ସେଇଠି ବସି କ'ଣ କରୁଥିଲେ ମୁଁ କିଛି ବୁଝିପାରିଲିନି । ଅପ୍ରସ୍ତୁତ ହେଇ ବାହାରକୁ ଚାଲି ଆସିଲି ।

ବାହାରେ ଛିଡ଼ା ହେଇଥିବା ବେଳେ ତୁମ୍ଭ ବାପା ଡ୍ରିଲ ମାଷ୍ଟରବାବୁ ଦେଖାହେଲେ । ସେ ଗୋଟେ ମିନିଟ୍ ଭିତରେ ମୋତେ ଚିହ୍ନିନେଲେ । କିନ୍ତୁ ମୋତେ ସ୍ୱାଗତ ସମ୍ଭାଷଣ ଜଣାଇଲେ ନାହିଁ । ସେ ଜାଣିପାରିଲେନି ଯେ ମୋତେ କେମିତି ଗ୍ରହଣ କରିବେ ? ମୋ ସହ କେଉଁଠୁ କଥା ଆରମ୍ଭ କରିବେ । କେଉଁ ସମ୍ବନ୍ଧରେ, କେଉଁଠାରୁ କଥାର ଖିଅ ଆରମ୍ଭ ହେବ... ସେ କିଛି କହିବା ଆଗରୁ ଜଣେ ଆଗନ୍ତୁକକୁ ପଚାରିଲା ଭଳି ମୁଁ ଜେଜେବାପାଙ୍କ ବିଷୟରେ ପଚାରିଦେଲି ।

''ସେ ତ ପହରିଦିନ ଚୁନାର୍ ଚାଲିଗଲେ'' ମାଷ୍ଟରବାବୁ କହିଲେ ।

''ପହରିଦିନ... ମୁଁ ଆଉ କ'ଣ କହିପାରିଥାଆନ୍ତି ?

'ହଁ' । ସେ ରହିଲେ ନାହଁ, ବହୁତ ଲୋକ ଚାଲିଯାଇଛନ୍ତି । ସେ କହିଲେ ।

ଆଉ ମୁଁ ସେହିକ୍ଷଣି ଜାଣିସାରିଥିଲି ଯେ ଏସବୁ କଥା ସତ୍ତ୍ୱେ ବ ଜେଜେବାପା ହୁଏତ ପୁଣି ଚୁନାର୍ ଫେରି ପାରିଥାଆନ୍ତି କିନ୍ତୁ ମାଷ୍ଟରବାବୁ ନୁହଁ । ମାଷ୍ଟରବାବୁଙ୍କର ଚୁନାର୍ ଛାଡ଼ିବାର କାରଣ ସେଇଆ ହେଇଥିବ ଯାହା ଜେଜେବାପାଙ୍କର ଓ ମୋର କାରଣ ଅଟେ । ତାଙ୍କର ଏଠାକୁ ଫେରି ଆସିବା ଥିଲା ସମୟ ପ୍ରଦତ୍ତ ଏକ ବନବାସ ଭଳି । ଆଉ ସମୟ ଦେଇଥିବା ଏଇ ବନବାସରୁ ଫେରିଆସିବା ବି ସମ୍ଭବ ନଥିଲା । ଆଉ ମୋତେ ତ କେବଳ କେତେକ ବ୍ୟକ୍ତିବିଶେଷ ହିଁ ବନବାସ ପ୍ରଦାନ କରିଥିଲେ ।

ସେଠାରେ ଆମ ଘରର ଲୋକ କେହି ନଥିଲେ, ସେଥିପାଇଁ କିଛି କହିପାରୁ ନଥିଲି । ଦଙ୍ଗାଗ୍ରସ୍ତ ସହର- କେଉଁଠି ଆଶ୍ରୟ ପାଶୋରି ଥାଆନ୍ତି ? ମାଷ୍ଟରବାବୁ ନିଜ ଘରେ ମୋତେ ରଖିବେ, ଏହାବି ସମ୍ଭବ ନଥିଲା । ସେଠି ବନ୍ନୋ ବି ଥିବ । ଜଣେ ଅଜଣା ଲୋକ ଭାବି ମୋତେ ବାହାରେ ଛାଡ଼ିଦେଇ ଘର ଭିତରକୁ ପଶିଯିବେ, ଏଭଳି ପରିସ୍ଥିତି ବି ନଥିଲା ।

''ସବୁ ଜିନିଷପତ୍ର ନେଇଯାଇଛନ୍ତି ?'' ମୁଁ ପ୍ରଥମେ ପଚାରିଲି ।

'ନା, ବହୁତ ଜିନିଷ ଏଇଠାରେ ଅଛି ।' ସେ କହିଲେ ।

'ତାଲା ଲଗେଇଦେଇ ଯାଇଛନ୍ତି ?'

'ହଁ, ଗୋଟେ ଚାବି ମୋ ପାଖରେ ଅଛି' ସେ ସଂକୋଚର ସହ କହିଲେ ।

'ମୁଁ ଗୋଟେଦିନ ରହିବି । କାଲି ସନ୍ଧ୍ୟାକୁ ଚାଲିଯିବି । ମୁଁ ଏକାଥରକେ କହିଲ । କାରଣ ମୋ ପାଖରେ ଆଉକିଛି ଚାରା ବି ନଥିଲା । ଅଜଣା ବସ୍ତିରେ ରାତିରେ ମୁଁ କେଉଁଠିକି ଯାଇଥାଆନ୍ତି ।'

ମୋତେ ଛାଡ଼ିଦେଇ ସେ ଘର ଭିତରକୁ ପଶିଗଲେ । ଗୋଟାଏ ମିନିଟ୍ ପରେ ମହମବତୀ ଆଉ ଚାବି ନେଇ ଆସିଲେ । ଆଉ ପାଖ ସିଡ଼ିରେ ମୋତେ ଉପରକୁ ନେଇଗଲେ । ଚାବିଖୋଲି ମୋତେ ଧରେଇଦେଇ କହିଲେ- ''ଖିଆପିଆ କରଛ ତ ?''

'ହଁ' ମୁଁ କହିଲି ଓ ଭିତରକୁ ଚାଲିଗଲି ।

'କିଛି ଦରକାର ହେଲେ କହିବ ।' ସେ କହିଲେ ଓ ତଳକୁ ଚାଲିଗଲେ

ବନ୍ନୋ, କେତେ ବିଚିତ୍ର ଥିଲା ସେଇ ରାତି ! ତୁମେ ଜାଣି ନଥିଲ ଯେ ମୁଁ ଉପରେ ଅଛି । ମାଷ୍ଟରବାବୁ ତୁମକୁ କହିଥିବେ କି ନାହିଁ କେଜାଣି । ହୁଏତ ଅନ୍ୟ କିଛି କହି ଦେଇଥିବେ । ସକାଳୁ ସକାଳୁ ପୋଲିସ ଆସି ନଥିଲେ ତୁମେ ଜୀବନସାରା ଜାଣିପାରିନଥାଆନ୍ତ ଯେ ଛାତ ଉପରେ ସେଦିନ ରାତିରେ ବୁଲୁଥିବା ଛାଇ କାହାର ଥିଲା ? ଚାରିଆଡ଼େ ଥିଲା ନୀରବତା... ହଁ ନୀରବତା...

ସେଦିନ ଥିଲା ଜହ୍ନରାତି । ପବନ ବି ଖୁବ୍ ଗୁମ୍‌ସୁମ୍ । ମୁଁ ଟିକେ ଶାନ୍ତିରେ ନିଃଶ୍ୱାସ ନେବାପାଇଁ ଓ ବନ୍ନୋକୁ ଦେଖିବା ପାଇଁ ଖୋଲା ଛାତ ଉପରେ ଖଟଟିଏ ପକେଇ ଶୋଇଥିଲି । କିଛି ସମୟ ପର୍ଯ୍ୟନ୍ତ ଧୀରେ ଆବାଜ୍ ଦେଇଥିଲି । ହୁଏତ ତୁମେ କୌଣସି ପ୍ରତିଶବ୍ଦରେ ମୋତେ ଉତ୍ତର ଦେବ... ପୁଣି ମନରେ ଅନ୍ୟକିଛି ଚିନ୍ତାକଲି । ଯେତେ ଗରମ ହେଉପଛେ, ସ୍ତ୍ରୀଲୋକଟିକୁ ସ୍ୱାମୀ ନିକଟରେ ହିଁ ଶୋଇବାକୁ ହିଁ ପଡ଼ିଥାଏ ।

ପଛରେ ଥିବା ଅଶ୍ୱତ୍ଥ ଗଛ ଜହ୍ନରାତିରେ ଗାଧୋଇ ପଡ଼ିଥିଲା । ମୁଁ ଖଟ ଏମିତି ଜାଗାରେ ପକେଇଥିଲି ଯେମିତି ଉପରୁ ଅଗଣାକୁ ଦେଖିପାରିବି- କିନ୍ତୁ ଯାହାକିଛି ଦେଖିଥିଲ, ତାହାଥିଲା ଖୁବ୍ ଭୟାବହ ।

ଅଗଣାରେ ଦୁଇଟି ଖଟ ପଡ଼ିଥିଲା । ଗୋଟିକ ଉପରେ ବନ୍ନୋର ମାଆ ଓ ଅନ୍ୟଟିରେ ବନ୍ନୋ । ଖୁବ୍ ଆଶ୍ଚର୍ଯ୍ୟ ଲାଗୁଥିଲା ବନ୍ନୋକୁ ସେଠାରେ ଶୋଇଥିବାର ଦେଖି...

ଆକାଶରୁ ଝରି ପଡୁଥିଲା ଜ୍ୟୋତ୍ସ୍ନାର ଫୁଆର ଆଉ ବନ୍ନୋ ନିଜର ବ୍ଲାଉଜ ଖୋଲି ଶାଢ଼ୀକୁ ଅଣ୍ଟା ପର୍ଯ୍ୟନ୍ତ ଖସେଇଦେଇ ଫୁଙ୍ଗୁଳା ହେଇ ଶୋଇଥିଲା । ତା'ର ଫୁଙ୍ଗୁଳା ଛାତି ଦୁଇଟି ପାଣିରେ ଭରି ଯାଇଥିବା ବେଲୁନ୍ ଭଳି ହଲି ଯାଇଥିଲା ଓ ସେ ଦରମଲା ମାଛଟିଏ ଭଳ ଧୀରେ ଧୀରେ ବିଚଳିତ ହେଇ ଉଠୁଥିଲା ।

''ହାଏ ଆଲ୍ଲା...'' ବନ୍ନୋର ଯନ୍ତ୍ରଣାସିକ୍ତ ଚିତ୍କାର ।

'ଶୋଇଯା, ମା ଶୋଇଯା'... ବନ୍ନୋର ମାଆ କହୁଥିଲେ ।

' ଏ ଦୁଇଟି ଫାଟି ପଡୁଚି ମା'- ବନ୍ନୋ କହିଲା ଆଉ ନିଜର ସ୍ତନ ଦୁଇଟିକୁ ଜୋର୍‌ରେ ଚାପି ଦେଇଥିଲା । ସତେଅବା ଛାତିକୁ ସେ ସଂପୂର୍ଣ୍ଣ ଚିପୁଡ଼ି ଦେବାକୁ ଚାହେଁ ।

ମାଆ ଉଠିପଡ଼ି ବସିଲେ- ''ଆ ମୁଁ ଦୁହିଁଦିଏ'', କହି କହି ସେ ବନ୍ନୋର ଫୁଲି ଉଠିଥିବା ଛାତି ଦୁଇଟିକୁ ଚାପିବା ଆରମ୍ଭ କରି ଦେଇଥିଲେ । ଦୁଧର ଛୋଟ ଛୋଟ ଧାର ବନ୍ନୋର ଛାତିରୁ ଝରି ଚାଲିଥିଲା ଓ ସେ ଧୀରେ ଧୀରେ ଚିତ୍କାର କରି ସୁଁ ସୁଁ ସ୍ୱରରେ ସକେଇ ସକେଇ କାନ୍ଦୁଥିଲା । ଦୁଧର ଛୋଟ ଛୋଟ ଧାରା ଯେମିତି ଅତରର ଶିଶି ଭିତରେ କେଉଁଠି ଅଟକି ଯାଇଥିଲା । ପୁଣି ଦଶ ବାରବିନ୍ଦୁ ହଠାତ୍ ଝରି ଆସୁଥିଲା । ଦି' ଚାରି ବୁନ୍ଦା କ୍ଷୀର ତା' ତଳିପେଟରେ ପାରଦ ଭଳି ଚକ୍‌ମକ୍ କରୁଥିଲା । ତା' ନାଭିରେ ଭରିଯାଇଥିବା କ୍ଷୀର ଗୋଟେ ବଡ଼ ମୋତି ଭଳ ଜହ୍ନ କିରଣରେ ଝଲମଲ୍ କରୁଥିଲା ।

ମାଆ ତା' ଛାତିର କ୍ଷୀରକୁ ନିଜ ଲୁଗାକାନିରେ ଶୁଖାଇ ଦେଉଥିଲେ ଏବଂ ଚାରି ପାଞ୍ଚଥର ପରେ ସେହି ପାଖ ନାଳରେ ଚିପୁଡ଼ି ଦେଉଥିଲେ । ମଇଳା ନାଳରେ ଧଳାରଙ୍ଗର ଦୁଧର ସର୍ପିଳ ଧାରା କିଛିବାଟ ଯାଇ ପାଣିରେ ମିଶି ଯାଉଥିଲା ।

ମୁଁ ଏସବୁ କ'ଣ ଦେଖୁଥିଲି ବନ୍ନୋ ! ଏଭଳି ପରିସ୍ଥିତି ଦେଖି ମୋ ଦେହ ଶିହର ଉଠିଥିଲା । ସାରା ଶରୀରର ଝାଳରେ ଗାଧୋଇ ପଡ଼ିଥିଲି ମୁଁ । ସିତ୍କାର, ମୃଦୁ ଶିହରଣ ଓ ଆକାଶକୁ ଚାହିଁ ରହିଥିବା ଦୁଇଟି ଉନ୍ମୁକ୍ତ ସ୍ତନ... ! କିଛି ଭୟ, କିଛି ଉତ୍କଣ୍ଠା ଓ ପରିଶେଷରେ ସଂପୂର୍ଣ୍ଣ ଭୁଲ୍ ଦେଖିଥିବାର ଗଭୀର ପଶ୍ଚାତାପ...

ବହୁତ ବେଳଯାଏଁ ମୁଁ ଛାତ ଉପରେ ଟହଲୁଥିଲ । ତଳେ ସମସ୍ତେ ନିସ୍ତବ୍ଧ ହେଇଗଲା ପରେ ମୁଁ ଦେଖିଲି ବନ୍ନୋ ଛାତି ଉପରେ କାନି ଢାଙ୍କିଦେଇ ଶୋଇଯାଇଚି । ମୁଁ ବି ଶୋଇଗଲି । ଏ କ'ଣ ଦେଖୁଥିଲି ମୁଁ... ଆକାଶରେ ସ୍ଥାନେସ୍ଥାନେ କ୍ଷୀରଭର୍ତ୍ତି ଛାତିମାନ ଝୁଲି ରହିଥିଲେ ।

ଆଖି ଲାଖିଆସିଛି କି ନାହିଁ, ହଠାତ୍ ପଛପଟେ ଖଡ୍ ଖଡ୍ ଶୁଣାଗଲା । କିଏ ଜଣେ କାନ୍ଦୁଥିଲା ଆଉ ନାକପୋଛି ପୋଛି କହୁଥିଲା- ''କାଦିର୍ ମିଆଁ ! ଶଳା ପାକିସ୍ଥାନ ତିଆରିହେଲା... ପୂରା ପାକିସ୍ଥାନ...

ପୁଣି କାନ୍ଦିବା ବନ୍ଦ ହେଇଯାଇଥିଲା । କିଛ ସମୟ ପରେ ସେଇ ଶବ୍ଦ ପୁଣି ଶୁଣାଯାଇଥିଲା ''କାଦିର୍ ମିଆଁ, ଏଇଠି ଏବେ ସବୁକିଛି ହେବ ! 'ହଜ୍' ହେଇଗଲା ବୋଲି ଜାଣିରଖ କାଦିର୍ ମିଆଁ'' ।

ଯଦି ପଛପଟେ ଅଶ୍ୱତ୍ଥଗଛ ନଥାଆନ୍ତା, ପାତାଳରୁ ଆସୁଥିବା ଏ କଥାସବୁ ମୁଁ ଶୁଣି ପଳେଇ ଯାଇଥାଆନ୍ତି । କିନ୍ତୁ ଏବେ ଖୋଲାଆଖିରେ ବିଭିନ୍ନ ପ୍ରକାରର ଦୃଶ୍ୟ ଦେଖିପାରୁଥିଲି । ଆକାଶରୁ ଝରିପଡୁଥିବା ରକ୍ତ, ଅନ୍ଧାରରେ ଦଉଡୁଥିବା ଲାସ୍... । ବିଚ୍ ବଜାରରେ ଠିଆ

ହୋଇଥିବା କବନ୍ଧ ଆଉ କଟା ହୋଇଥିବା ଓ ବେକ ପାଖରୁ ପିଚ୍‌କାରି ମାରୁଥିବା ରକ୍ତର ଧାର । ଅଗ୍ନିଶିଖା ଭିତରେ ନାଚି ଚାଲିଥିବା ଲୋକମାନେ...

ଅଶ୍ୱତ୍ଥଗଛର ପତ୍ର ଫଡ୍ ଫଡ୍ ହେବାରୁ ମୁଁ ବହୁତ ଡରିଗଲି । ଗଛର ପତ୍ରମାନଙ୍କର ଶବ୍ଦ ଏଭଳି ଶୁଣାଯାଉଥିଲା ସତେ ଯେମିତି ଡାକ୍ତରଖାନାର ଅଫିସ୍‌ରେ ବସି ଟାଇପ୍ କରୁଥିବା ବାବୁ ନିଜ ମେସିନ୍‌ରେ ଟାଇପ୍ କରି ଚାଲିଛନ୍ତି, ହଁ ସେ ଶବ୍ଦ ଥିଲା ମୋର ଖୁବ୍ ଜଣାଶୁଣା । ବାକି ସବୁ ଥିଲା ଖୁବ୍ ଭୟାନକ ।

ସକାଳକୁ ମଥା ଖୁବ୍ ଭାରି ଭାରି ଲାଗୁଥିଲା । ଆଖି ପୋଡୁଥିଲା । ହାତଗୋଡ଼ ଅବଶ । ମୋତେ ଉଠିବାକୁ ପଡ଼ିଲା, କାରଣ ପୋଲିସ ଆସିଥିଲା । ମାଷ୍ଟରବାବୁ ଆସି ମୋତେ ଉଠେଇଦେଲେ । ସେ ଖୁବ୍ ଡରିଯାଇଥିଲେ । କହିଲେ, ''ପୋଲିସ ତୁମ କଥା ପଚାରୁଛି ।''

'କାହିଁକି' ?

ପୋଲିସ୍ ଲୋକମାନଙ୍କୁ ବହୁତ ପଚରାଉଚରା କଲେ ! ମୋତେ ପଚାରୁଥିଲେ କାଲି ରାତିରେ କିଏ ଆସିଚି, କେଉଁଠୁ ଆସିଛି ? କାହିଁକି ଆସିଚି ?'

ଶୁଣିଲାମାତ୍ରେ ମୋ ଦେହରେ ନିଆଁ ଲାଗିଯାଇଥିଲା ଯେମିତି । ତୁମେ କୁହ, ଯେତେବେଳେ ମୁଁ ଘରୁ ସେଇ ଅନ୍ଧକାର ରାତ୍ରିରେ ବାହାରି ଆସିଥିଲି କେହି କ'ଣ ପଚାରିବାକୁ ଆସିଥିଲା ଯେ ଏଇ ରାତିରେ କିଏ ଏଠାରୁ ଚାଲିଯାଉଚି ? କେଉଁଠାକୁ ଯାଉଚି ଓ କାହିଁକି ଯାଉଚି ?''

ଜଣେ ଲୋକକୁ ସଂପୂର୍ଣ୍ଣ ଭାବେ ନ ବୁଝି, କେବଳ ତାର ବ୍ୟକ୍ତିତ୍ୱର ଏକ ପାର୍ଶ୍ୱକୁ ଦେଖି ବୁଝିବା ହିଁ 'ପାକିସ୍ଥାନ' ବନ୍ଧୋ ! ଯେତେବେଳେ ପୋଲିସ ସକାଳୁ ସକାଳୁ ମୋତେ ଉଠେଇ ଥାନାକୁ ନେଇଯାଇଥିଲା ମୁଁ ଜାଣିଯାଇଥିଲି ଯେ ମୁଁ ଏବଂ ତୁମେ ଦୁଇଜଣ 'ପାକିସ୍ଥାନ' ଦ୍ୱାରା ଘେରି ହୋଇଯାଇଚନ୍ତି... କେତେ ଦୁଃଖଦ ଥିଲା ଆମର ଏଇ କବଳିତ ହେବା ସତରେ....

ଥାନାରେ ମୋତେ ଯାଞ୍ଚ କରାଗଲା । ମୁଁ ଏଠାକୁ କାହିଁକି ଆସିଚି ? କ'ଣ କହିଥାଆନ୍ତି ସେମାନଙ୍କୁ ? ମଣିଷ କେଉଁଠିକୁ କାହିଁକି ଯାଆସ କରେ ? ପୋଲିସ ମୋତେ ବହୁତ ହଇରାଣ ହରକତ କରିଥାଆନ୍ତେ, ଯଦି ମାଷ୍ଟରବାବୁ ସେଠାରେ ଯାଇ ପହଞ୍ଚି ନଥାନ୍ତେ । ସେ ଏସବୁ ପ୍ରଶ୍ନର ଉତ୍ତର ଦେଇଥିଲେ ଥାନାରେ । ସେହି ସମୟରେ ତାଙ୍କର ମୁସଲମାନ ହେବା ମୋ ପାଇଁ ଫଳପ୍ରଦ ସାବ୍ୟସ୍ତ ହୋଇଥିଲା । ଜଣେ ମୁସଲମାନ୍ ଯଦି ହିନ୍ଦୁ ନିମନ୍ତେ ନିର୍ଦ୍ଦୋଷରେ ସାର୍ଟିଫିକେଟ ଦେଉଥାଏ, ତାହାହିଁ ଥିଲା ସବୁଠୁ ବଡ଼ ପ୍ରମାଣ । କିନ୍ତୁ ମୋତେ ଲାଗୁଥିଲା ହୁଏତ ମାଷ୍ଟରବାବୁ ପୁଣି ହୁଏତ ସେଇ ଭୁଲ୍ କରୁଛନ୍ତି, ଯେଉଁ ଭୁଲ୍ ସେ ସଂପ୍ରୀତିର ଗୀତ । 'ଭରଥରିନାମା' ଲେଖି କରିଥିଲେ ।

ଥାନାରେ ପ୍ରଶ୍ନ ସବୁର ଉତ୍ତର ଦେବା ଏତେ ସହଜ ନଥିଲା । ଥିଲା ଖୁବ୍ ଅଙ୍କାବଙ୍କା । ଶେଷରେ ସେଠାରୁ ବାହାରି ଆମେ ସାମ୍ନାରେ ପଡ଼ିଥିବା କାଠଗଦା ଉପରେ ବସିଥିଲୁ । ମାଷ୍ଟରବାବୁ ଚାହୁଁଥିଲେ ଯେ ମୁଁ ପୁଣି ସ୍ୱାଭାବିକ ହେଇଯାଏଁ, କାରଣ ସେତେବେଳକୁ ମୋ ଚେହେରା କଳାକାଠ ପଡ଼ିଯାଇଥିଲା ।

ସେଠାରେ ଆଲୁଅ ପାଖରେ ଦୁଇ ତିନିଜଣ ଲୋକ ବସିଥିଲେ । ପ୍ରାୟ କାହାରି ଜାମିନ୍ କିମ୍ବା ପଚରା ଉଚୁରା ବିଷୟରେ ସେମାନେ ଆସିଥିଲେ । ସେମାନଙ୍କର ଚେହେରା ମ୍ଳାନ ଦିଶୁଥିଲା ଓ ଖୁବ୍ ଦୁଃଖୀ ବି । ମୌଲନାଙ୍କ ଚକ୍ଷୁରେ ଥିଲା କ୍ଷୋଭ । ସେ ପାଖରେ ବସିଥିବା ଲୋକମାନଙ୍କୁ କହୁଥିଲେ ''ରସୁଲ୍ କହିଛନ୍ତି ଯେ ସ୍ୱରଯନ୍ତ୍ର କେବଳ ତିନିଥର ହିଁ ଫୁଙ୍କାଯିବ । ପ୍ରଥମ ଥର ପାଇଁ ଏହାକୁ ଫୁଙ୍କିଲେ ଲୋକମାନେ ଭୟଭୀତ ହେଇଉଠିବେ, ସମସ୍ତେ ବ୍ୟତିବ୍ୟସ୍ତ ହେଇଉଠିବେ । ଦ୍ୱିତୀୟଥର ଯେବେ ତାହାକୁ ଫୁଙ୍କାଯିବ, ସମସ୍ତେ ମରିଯିବେ । ତୃତୀୟ ଥର ବାଜିଲେ ଲୋକମାନେ ବଞ୍ଚି ଉଠିବେ ଏବଂ ଈଶ୍ୱରଙ୍କ ସାମ୍ନାରେ ପେଶ୍ ହେବାପାଇଁ ବାହାରିଯିବେ... ସେଇଆ ହିଁ ହେବ... ବର୍ତ୍ତମାନ ତ କେବଳ ପ୍ରଥମ ଥର ପାଇଁ ଏହା ବାଜିଛି...''

'ଭର୍‌ଥରିନାମା ଲେଖୁଛନ୍ତି' ମୁଁ ପଚାରିଲି । 'ହଁ' ।

"ଭରମି ଯାଇଚି ମୋ ମନ, ଆଜି ଏଇଠି ରାତି ଆଉ ଦିନ,

କୁହ, ଜଲ୍‌ଦି ଯାଉ ବିତି ରାତି । ଶୀଘ୍ର ପ୍ରକାଶ ହେଉ ଦିନ'' ।...

କହୁଁ କହୁଁ ମାଷ୍ଟରବାବୁ ସେଆଡ଼କୁ ଦେଖିବାରେ ଲାଗିଲେ ଯେଉଁଠି ଛାତର ଏକ ଫାଙ୍କା କୋଣରେ ଛୋଟ ଛୋଟ ହଳଦିଆ ଘାସଫୁଲ ଫୁଟିଥିଲା । ଘଞ୍ଚ ଘାସ ଭିତରେ ହଳଦିଆ ଫୁଲମାନ ଛୋଟ ମାଛ ଡେଇଁ ପଡ଼ିଥିଲା ଭଳି ଲାଗୁଥିଲେ । ଘାସର ବୃନ୍ତରୁ ହଳଦୀ ରଙ୍ଗର ଫୁଲ ସବୁ ଅଲଗା ହେଇଯାଇ ଉଡ଼ିଯାଉଥିଲେ... ଘଞ୍ଚ ଘାସ ଭିତରୁ ଧଳା ଧଳା ପକ୍ଷଯୁକ୍ତ ଫୁଲ ସବୁ ପବନରେ ଉଡ଼ିଯିବା ପୁଣି ପବନରେ ହଲି ହଲି ଘାସ ଆଡ଼କୁ ଫେରିଆସିବା, ହଳଦିଆ ଫୁଲମାନଙ୍କର ଝରିଯିବା, ହଲି ହଲି ଫୁଲସବୁ ତଳକୁ ଖସିପଡ଼ିବା ପୁଣି ଧଳା ଧଳା ଘାସଫୁଲ ଆକାଶରେ ଉଡ଼ି ଉଡ଼ି ପୃଥିବୀ ପୃଷ୍ଠକୁ ଲେଉଟିଆସିବା...

ମାଷ୍ଟରବାବୁ ନୀରବତାର ସହ ଏସବୁ ଦେଖି ଚାଲିଥିଲେ ବସି । ଶେଷରେ ମୁଁ ତାଙ୍କ ଧ୍ୟାନଭଙ୍ଗ କଲି 'କାଲି ରାତିରେ'...

'ହଁ ସେ ହେଉଚି ବଦ୍‌ରୁ- ପାଗଳ ହେଇଯାଇଚି । ତା'ର ଚାଳିଶିଟି ଦନ୍ତ ଥିଲା । ଦଙ୍ଗାବେଳେ ସବୁ ଜଳି ପାଉଁଶ ହେଇଗଲା । ପଛ ଅଶ୍ୱତ୍ଥ ମୂଳରେ ସେବେଠୁ ବସିଚି । ସାରା ରାତି କାନ୍ଦେ... ଗାଳିଦେଇ ବକୁଥାଏ...' ମାଷ୍ଟରବାବୁ କହିଲେ ।

'ଘରେ କିଛି...' ମୁଁ ସାହସ କର କହିବାରୁ ମାଷ୍ଟରବାବୁ ଜଣେ ସନ୍ନ୍ୟାସୀ ଭଳି କହି ଚାଲିଲେ- ''ହଁ ବନ୍ନୋ ଖୁବ୍ କଷ୍ଟ ପାଉଚି । ଦଙ୍ଗାର ତିନିଦିନ ପୂର୍ବରୁ ପୁଅଟିଏ ହେଥିଲା ।

ଡା. ସାରଙ୍ଗଙ୍କ ଶିଶୁ ଚିକିତ୍ସାଳୟରେ ଆହୁରି ଅନେକ ଶିଶୁମାନଙ୍କ ସହ ଥିଲା । ଦଙ୍ଗାକାରୀମାନେ ସେଠାରେ ନିଆଁ ଲଗାଇ ଦେଇଥିଲେ । ଭିତରକୁ ଯାଇ ପିଲାମାନଙ୍କୁ ଉଦ୍ଧାର କରବାର ରାସ୍ତା ବନ୍ଦ ହେଇଗଲା । ତେଣୁ କୋଠା ଉପରୁ ପିଲାମାନଙ୍କୁ ତଳକୁ ଫିଙ୍ଗାଗଲା । ନଅଜଣ ପିଲାଙ୍କ ଭିତରୁ ପାଞ୍ଚଜଣ ମରିଗଲେ । ବନ୍ନୋର ପୁଅ ବି ଗଳିରେ ଫିଙ୍ଗିଲା ବେଳେ ଖସିପଡ଼ି ମଲା । ସେତିକିବେଳେ ହଣାକଟା ଚାଲିଥିଲା । ବନ୍ନୋକୁ ଯେମିତି ହେଉ ଆମେ ବଞ୍ଚେଇ ନେଇ ଆସିଥିଲୁ । ଏବେ ତାର ଛାତିରେ କ୍ଷୀର ଓହ୍ଲେଇ ଆସି ଖୁବ୍ ଯନ୍ତ୍ରଣା ହେଉଚି...''

କିଛି ସମୟ ପାଇଁ ନୀରବତା । ଘାସରୁ ଧଳାଧଳା ଫୁଲ ବିଚ୍ଛିନ୍ନ ହେଇଚାଲିଥିଲା........ ପୁଣି ଉଡିଯାଉଥିଲା ଆକାଶ ଆଡକୁ.....ଉଠିବାର ବାହାନା କରି ମୁଁ କହିଲି.....''ଭାବୁଚି ଦି'ପହରକୁ ପୁନା ଚଲିଯିବି.....''

''ଯାଇହେବ ତ ଚୁନାର୍ ଯାଅ... ଜେଜେବାପାଙ୍କୁ ଦେଖିଆସ...'' ମାଷ୍ଟରବାବୁ କହିଲେ ।

''କଣ, ତାଙ୍କର କିଛି ଅସୁବିଧା ହେଇନାହିଁ ତ'' ?

ହଁ ତାଙ୍କର ଗୋଟେ ହାତ କଟିଯାଇଚି । ତାଙ୍କ ଘର ସାମ୍ନାରେ ହିଁ ହଣାକଟା ଚାଲିଥିଲା । ସେ ନଥିଲେ ହୁଏତ ଆମେମାନେ ବଂଚିନଥାଆନ୍ତୁ । ଆମ ଉପରେ ଆକ୍ରମଣ ହେଇଥିଲା । ଆମକୁ ସେ ବଂଚାଇବାକୁ ଗଳିକୁ ଓହ୍ଲେଇ ଆସିଥିଲେ । ଠିକ୍ ସେତିକିବେଳେ ତାଙ୍କ ବାହୁରେ ଆକ୍ରମଣ ହେଇଥିଲା । ବାମ ବାହୁ କଟିଯାଇ ଗଳିରେ ପଡ଼ି ରହିଲା । କିନ୍ତୁ ସାହସର ସହ ନିଜର କଟା ହାତକୁ ଉଠେଇ ନେଇ ଲଢ଼ିବାରେ ଲାଗିଲେ । ରକ୍ତ ପିଚ୍‌କାରୀ ମାରି ବହି ଚାଲିଥିଲା । କଟା ହାତ ହିଁ ଥିଲା ତାଙ୍କର ହତିଆର... ଦଙ୍ଗା କରୁଥିବା ଲୋକମାନେ ନିଆଁହୁଳା ଫିଙ୍ଗିଦେଇ ପଳେଇଗଲେ । ଗଳିରେ ତାଙ୍କ ଖଣ୍ଡ ବିଖଣ୍ଡିତ ହାତ ଟୁକୁଡ଼ାଟୁକୁଡ଼ା ହେଇ ପଡ଼ିଥିଲା । ତାଙ୍କୁ ମୁଁ ଉଠେଇଲାବେଳକୁ ସେ ବେହୋସ ଥିଲେ । ଡାହାଣ ହାତରେ କଟି ଯାଇଥିବା ହାତର ପାପୁଲିକୁ ତଥାପି ସେ ଦୃଢ଼ ଭାବେ ଧରିଥିଲେ । ଥାନା ହସ୍ପିଟାଲରେ ତାଙ୍କର ଚିକିତ୍ସା କରାଗଲା । ଭଗବାନଙ୍କ ଦୟାରୁ ଜୀବନ ନେଇ ଆଠଦିନ ପରେ ଏଠାକୁ ଫେରିଲେ ଓ ଠିକ୍ ତା'ପରଦିନ ଚୁନାର ଚାଲିଗଲେ ।

ତା'ହେଲେ ତାଙ୍କ ହାତର ଅବସ୍ଥା କେମିତି ଥିଲା ? ଏସବୁ ଶୁଣି ସ୍ତବ୍ଧ ହେଇଯାଇଥିଲି ମୁଁ । 'ଠିକ୍ ଥିଲା । ଚାଲି ବୁଲି ପାରୁଥିଲେ । କହୁଥିଲେ ଯେ ସେହି ଚୁନାର ଡାକ୍ତରଖାନାରେ ହାତରେ ପଟି ଲଗାଇବେ, ହେ ଆଲ୍ଲା... ତାଙ୍କୁ ଦୟାକର ! ତୁମେ ଯାଇ ଥରେ ଦେଖିଆସ, ଭଲହେବ । ମାଷ୍ଟରବାବୁ କହିଲେ ଓ ନିଜ ହାତରେ ଆଖି ବନ୍ଦକଲେ ।

ଧୀରେ ଧୀରେ ମୁଁ ଚେତା ହରାଉଥିଲି ଯେମିତି । ମୁଁ ଥିଲି କେଉଁ ଦୁନିଆଁ ଭିତରେ ! ଯେଉଁ ଲୋକମାନଙ୍କ ସହ ଥିଲି ସେମାନେ କିଏ ? ଯେଉଁ ଲୋକମାନେ ମଣିଷମାନଙ୍କ ଭଳି ଦେଖାଯାଉଥିଲେ ତାହା ପ୍ରକୃତରେ ଥିଲା ସତ୍ୟ ନା ସ୍ୱପ୍ନ ! ଏବେ ମୋତେ କେବଳ

କ୍ଷତବିକ୍ଷତ ମଣିଷମାନେ ହିଁ ସତ ମଣିଷ ବୋଲି ଜଣାପଡୁଥିଲେ । ସଂପୂର୍ଣ୍ଣ ଅକ୍ଷତ ମଣିଷ ଲାଗୁଥିଲେ ଖୁବ୍ ଅଚିହ୍ନା ।

ମୁଁ ଫେରିଆସି ଘର ଭିତରେ ଗଡ଼ପଡ଼ ହେଉଥିଲି । ମାଷ୍ଟରବାବୁ ଭିତରକୁ ଚାଲି ଯାଇଥିଲେ ।

ସେହି ସମୟରେ ତଳୁ କିଛି ପାଟିଗୋଳ ଶୁଣାଗଲା । ବନ୍ନୋଇ ମାଆ, ମାଷ୍ଟରବାବୁ, ବନ୍ନୋର ସ୍ୱାମୀ, ମୁନୀର୍ ଏବଂ ବନ୍ନୋ- ସମସ୍ତେ ସେଠି ଥିଲେ । ମୁନୀର୍ କହୁଥିଲା- ''ଏଠି ରହିବା ପାଇଁ ଏତେ ଜିଦ୍ କାହିଁକି । ମୁଁ ବୁଝିପାରୁନି-''

'ତୁମେ କିଛି ବୁଝିପାରିବନି ।' ଏକଥା ବନ୍ନୋ କହୁଥିଲା- 'ଆମେ ପ୍ରଥମେ ଏଇ ମାଟିରୁ ହିଁ ଆମ  ପିଲାକୁ ନେବୁ । ଯେଉଁଠି ହରେଇଛୁ । ପୁଣି ଯେଉଁଠିକି କହିବ ସେଇଠିକୁ ଯିବୁ ।'

ମୁଁ ଲୁଚି ଲୁଚି ଦେଖିଲି । କ୍ଷୀଣକାୟ ମୁନୀର୍ ରାଗରେ ନିଆଁବାଣ ହେଇଯାଉଥିଲା । ଚିତ୍କାର କରି କହୁଥିଲା- ''ତେବେ ଏଇଠୁ ଛୁଆ ପେଟରେ ନେଇକରିଯା'- ଯାହାଠାରୁ ଇଚ୍ଛା ହେଉଚି, ନେଉନୁ ।

ମୁଁ ସନ୍ଦେହରେ ପଡ଼ିଯାଇଥିଲି । 'କେଉଁଠି...କିଛି...ମୋ କଥା ପଡ଼ିନି ତ ?... ହୁଏତ ମୁଁ ଭୁଲ୍ ବୁଝିଥିଲି । ବନ୍ନୋ ଡରିଯାଇ କହିଥିଲା, 'ତୁ ମୋତେ ଏବେ ଛୁଆ କେଉଁଠୁ ଆଣିଦେବୁ ?... ନିଜ ରକ୍ତ ବକି ମଦ ଖାଇବାରୁ ତୋତେ ଫୁରସତ୍ ମିଳିଲେ ତ ?...

''ଠାଏ... ! ପ୍ରାୟ ମୁନୀର୍ ବନ୍ନୋକୁ ଗୋଟେ ଚାପୁଡ଼ା ମାରିଥିଲା । ଛୋଟିଆ ମୋଟିଆ ଗଣ୍ଡଗୋଳ ସେଉଠୁ ଆରମ୍ଭ ହେଇଯାଇଥିଲା ।''

ପରେ ବନ୍ନୋ ମୁନୀର୍‌କୁ ସପି ଚାଲିଥିଲା- ''ଯେତେଥର ବମ୍ବେ ଯାଏ ରକ୍ତ ବକ୍ରକରି ଆସେ । ପୁଣି ସାରା ରାତି ଏଠି ପଡ଼ି ଥରୁଥାଏ -''

ଏସବୁ କ'ଣ ମୁଁ ଶୁଣୁଥିଲି ବନ୍ନୋ ! ମୋ ଭିତରେ ବି ଗୋଟେ ପାକିସ୍ଥାନ କାନ୍ଦି ଚାଲିଥିଲା । ସମସ୍ତେ ନିଜ ନିଜ ପାକିସ୍ଥାନକୁ ନେଇ ଛଟପଟ ହେଇ ଚାଲିଥିଲେ । ଖଣ୍ଡବିଖଣ୍ଡ, କ୍ଷତବିକ୍ଷତ, ଭଙ୍ଗାରୁଜା... !

ଓଃ କି ଅନ୍ଧାର ଥିଲା ସେଦିନର ରାତି- ଯେଉଁଦିନ ମୁଁ ଭିଓ୍ୱଣ୍ଡିରୁ ପୁଣି ସେଇମିତି ଚାଲି ଆସିଥିଲି । ଯେମିତି ଦିନେ ଚୁନାର୍‌ରୁ ଆସିଥିଲି । ଘରୁ ଗୋଟେ ଟ୍ୟାକ୍ସି ଥାନେ ଯାଉଥିଲା । ସେଇଥିରେ ବସିଗଲି । ଯେତେବେଳେ ଯାଏ ବସ୍ତି ଭିତର ଦେଇ ଗାଡ଼ି ଚାଲିଥିଲା, କଳା କଳା ଦରଜଳା ଅଗଣାସବୁ ସାମ୍ନାକୁ ଖାଲି ଆସିଯାଉଥିଲା । ଅଙ୍ଗାରର ତୀବ୍ର ଗନ୍ଧ ନାକ ଭିତରକୁ ପଶି ଆସୁଥିଲା । ଆକାଶରେ ଦୋହଲି ଚାଲିଥିଲେ ସ୍ତନସବୁ ତଳକୁ ଅନେଇ... ଛକ ଜାଗାରେ ମସ୍ତକବିହୀନ କବନ୍ଧମାନ ଛିଡ଼ା ହେଇଥିଲେ ଆଉ ରକ୍ତର ପିଚ୍‌କାରୀ ଛୁଟୁଥିଲା ସେମାନଙ୍କର ସ୍କନ୍ଧ ଦେଶରୁ...

ଥାନେ... ଥାନେରୁ ବସ୍‌ରେ ଚଢ଼ି ପୁଣି ବମ୍ବେ । ବମ୍ବେରୁ ଟ୍ରେନ୍‌ରେ ପୁନେ, ପୁଣି ପୁନେରେ କେତେଦିନ ଜ୍ୱରରେ ପଡ଼ି ଛଟପଟ...

ମୁଁ ସବୁକିଛି ଭୁଲିଯିବାକୁ ଚାହୁଁଥିଲି ବନ୍ନୋ... ଚାହୁଁଥିଲି ନିଜ ଭିତରେ ସୀମିତ ହେଇ ରହିଯିବାକୁ... ବୟସର ଏ ଗତି କେତେ କଷ୍ଟଦାୟକ ବନ୍ନୋ, ମଣିଷ କ୍ଷତବିକ୍ଷତ ହେଇ ଚାଲିଥାଏ, ରକ୍ତରଂଜିତ ହେଇ ପୁଣି ଚାଲିଥାଏ ଖାଲି ଆଗକୁ ଆଗକୁ...

ଆଉ ଏଇଭଳି ଏକାନ୍ତରେ ଯଦି କେହି ଶୁଣିପାରେ ଯେ ଅନ୍ୟଜଣେ ଏଠି କେହି ଥିଲା... ତା'ହେଲେ ଅନୁମାନକର ତା' ଅନ୍ତର ମଧ୍ୟରେ କ'ଣ ସବୁ ଘଟି ଚାଲିଥିବ । ଏକଥା କ'ଣ କେହି ବୁଝିପାରିବ ବନ୍ନୋ ! ତୁମେ ବି ନୁହଁ ବନ୍ନୋ ! 'ତେବେ କିଏ ?'

ଚାରିମାସ ବିତିଯାଇଥିଲା । ଜେଜେବାପାଙ୍କର ଚିଠି ଆସିଥିଲା ଯେ ସେ ପୁଣି ଭିଓ୍ୱଣ୍ଡି ଫେରି ଆସିଛନ୍ତି । ସିନ୍ଧି ଓ ମାରଓ୍ୱାଡ଼ିମାନଙ୍କ ପାଇଁ ମାଲ ବେଶୀ ମିଳିପାରିନି । ସେଥିପାଇଁ ବଜାର ମାନ୍ଦା । ତନ୍ତ ସବୁ ଚାଲିପାରିନି । ଗୋଟେ ହାତ ନଥିବାରୁ ଦେହର ସନ୍ତୁଳନ ଠିକ୍ ରହୁନି । ମଜାରେ ବି ସେ ଲେଖିଥିଲେ ଯେ ଲୋକେ ତାଙ୍କୁ 'ଏକହାତିଆ' ବୋଲି କହୁଛନ୍ତି । ମୁନୀର୍ ବନ୍ନୋକୁ ନେଇ ବମ୍ବେ ଚାଲିଯିବା ଛଡ଼ା ଆଉ କିଛି ଖବର ସେ ଦେଇନଥିଲେ । ସେ ଜାଣିନଥିଲେ ସେମାନେ ବମ୍ବେରେ ଅଛନ୍ତି ନା ପାକିସ୍ତାନ ଚାଲିଗଲେଣି । ଡ୍ରିଲ୍ ମାଷ୍ଟର ଅର୍ଦ୍ଧପାଗଳ ହେଇଯାଇଛନ୍ତି । ଘରେ ଡ୍ରିଲ୍ କରୁଛନ୍ତି ଓ ସ୍କୁଲରେ ବସି ପୋଥି ଲେଖୁଛନ୍ତି ।

ସେଦିନ ହୁଏତ ମୁଁ ବମ୍ବେ ଆସି ନଥିଲେ ତୁମ ସହ ଭେଟ ହେଇନଥାଆନ୍ତା ବନ୍ନୋ ! ଆଉ କେତେ କଷ୍ଟକର ଥିଲା ସେ ଦିନର ସାକ୍ଷାତ ବନ୍ନୋ ! ପରେ ମୁଁ ଅବଶ୍ୟ ଖୁବ୍ ପଶ୍ଚାତାପ କରିଥିଲି ହାୟ ! ମୁଁ ତୁମ ଜାଗାରେ ଥାଆନ୍ତି କି ? ତୁମେ ବି ମନେ ମନେ ଭାବିଥିବ ଯେ ମୁଁ ଏଇସବୁ କାମ କରୁଚି... ? ହଁ ମୁଁ ଏସବୁ କରୁଛି, କିନ୍ତୁ ତୁମ ସହ ନୁହଁ ପ୍ରାୟ ତୁମର ପାଇଁ ହିଁ ଏସବୁ କରୁଚି...

ମୋ ସହିତ ଯିଏ ଥିଲା ସେ ପୁନେର ନୁହଁ, ସେ ମୋର ବମ୍ବେର ଜଣେ ବନ୍ଧୁ । ତା' ନାଁ ଥିଲା କେଦାର । ସେ ପୁନାରେ ମୋ ସହ କିଛିଦିନ ବିତେଇଥିଲା, ସେଇଠି ମୋ ସହ ତାର ବନ୍ଧୁତ୍ୱ ଗଢ଼ି ଉଠିଥିଲା । ମୁଁ ଭିଓ୍ୱଣ୍ଡି ଯିବାପାଇଁ ବମ୍ବେ ଆସିଥିଲି । ବମ୍ବେରେ ପହଞ୍ଚି ମନ ବିଗିଡ଼ି ଯାଇଥିଲା ଯେ ସେଠାକୁ ଯାଇ କ'ଣ କରିବି ?

ସେଦିନ ସେଇ ସନ୍ଧ୍ୟାରେ ଆମ ବୁଲିଯିବା ସହ ତୁମର କିଛି ସମ୍ପର୍କ ନଥିଲା ବନ୍ନୋ । ସେଦିନ ମୁଁ ଓ କେଦାର ସାଥିହେଇ ବୁଲି ବାହାରିଥିଲୁ । କୁଲାଓ୍ୱାର ଏକ ପାନଶାଳାରେ ଆମେ ଦୁହେଁ ଅଳ୍ପ ଅଳ୍ପ ପିଇ ନେଇଥିଲୁ । ପୁଣି ସେଠାରୁ ବୁଲି ବୁଲି ହ୍ୟାଣ୍ଡଲୁମ୍ ହାଉସ୍ ପର୍ଯ୍ୟନ୍ତ ଆସିଥିଲୁ ।

ସେଇଠି ଗୋଟେ ଗଳି ଥିଲା । ଏବେ ଗଲେ ଜାଣିପାରିବି କିନ୍ତୁ ଠିକ୍ ମନେନାହିଁ ମୋର । କେଦାର ଓ ମୁଁ ଦୁହେଁ ସେଇଠିକି ଯାଇଥିଲୁ । ପ୍ରାୟ ଆଗକୁ ଯାଇ ଡାହାଣ ଆଡ଼କୁ

ମୋଡ଼ି ଯାଇଥିଲୁ । ସେଠାରେ ଏକ ସିଗାରେଟ୍ ଦୋକାନ ଥିଲା । ତଳେ କାର ଛିଡ଼ା ହେଇଥିଲା । ଲାଗୁଥିଲା ମୁସଲମାନ ତନ୍ତୀମାନଙ୍କର ବସ୍ତି । ଖୁବ୍ ନୀରବ ଓ ସଫାସୁତୁରା ।

ସେ ବିଲଡ଼ିଂରେ ଲିଫ୍ଟ ଥିଲା । ସିଢ଼ି ବି ଖୁବ୍ ପରିଷ୍କାର । କେଦାର ସହ ସିଢ଼ିରେ ମୁଁ ଉପରକୁ ଯାଇଥିଲି । ପାଞ୍ଚ ତାଲା ପର୍ଯ୍ୟନ୍ତ ଚଢ଼ି ଚଢ଼ି ମୁଁ ଉର୍ଦ୍ଧ୍ୱଶ୍ୱାସ ହେଇଯାଇଥିଲି । ସେଇ ସମୟରେ ଘରର ଝରକାରୁ ରୋଷେଇର ବାସ୍ନା ଆସୁଥିଲା । ଛଅ ତାଲା ଥିଲା ପୂରା ଶୂନ୍‌ଶାନ୍ । କେଦାର ଯେଉଁ ଫ୍ଲାଟ୍‌ର ଘଣ୍ଟି ବଜେଇଥିଲା, ତାହା ଏତେ ସଫା ସୁତୁରା ନଥିଲା ।

ଘରର ଦୁଆର ଖୋଲିଲା ବେଳକୁ ଶ୍ୱାସରୋଗୀ ଭଳି ନିଶ୍ୱାସ ନେଉଥିବା ଜଣେ ସିନ୍ଧିଲୋକର ସାମ୍ନାରେ ଆମେ ଠିଆ ହେଇଥିଲୁ । ସେ ଆମକୁ ଏକ ଘର ଭିତରକୁ ନେଇଗଲା । ଯେଉଁଠି ଖୁବ୍ ସାଧାରଣ ପ୍ରକାରର ସୋଫା ପଡ଼ିଥିଲା । ସେଇ ସିନ୍ଧୀ ଲୋକଟିଙ୍କୁ ଏବେ ବି ଦମା ପେଲୁଥିଲା । ଲାଗୁଥିଲା ଯେମିତି ସେ ଯଦି ବେଶୀ କଥାବାର୍ତ୍ତା କରେ, ତେବେ ତା'ର ନିଃଶ୍ୱାସ ପ୍ରଶ୍ୱାସ ବନ୍ଦ ହେଇଯିବ ଏବଂ ଆଉ ସେ କେବେ ହୋସ୍ ଫେରିପାରିବନି ।

ମୋତେ ଅବରୁଦ୍ଧ ହେଇଯବା ଭଳି ଲାଗୁଥିଲା, ତେଣୁ ଖୋଲା ପବନରେ ନିଃଶ୍ୱାସ ନେବାପାଇଁ ମୁଁ ଝରକା ପାଖରେ ଛିଡ଼ା ହେଲି । ବହୁଦୂର ପର୍ଯ୍ୟନ୍ତ ମୂଇଳା ହେଇଯାଇଥିବା ଛାତ ଦେଖାଯାଉଥିଲା- ବିଭିନ୍ନ ଆକାର ପ୍ରକାରର । ମୋ ବିଷୟରେ କେଦାର କହିଦେଇଥିଲା ଯେ ମୁଁ ସେଇ ସୋଫା ଉପରେ ବସି ଅପେକ୍ଷା କରିବି । ସେଇ ଦମାପେଲୁଥିବା ସିନ୍ଧୀ ଲୋକଟି କୋକାକୋଲା ବୋତଲଟିଏ ମଗାଇ ମୋ ପାଇଁ ସେଠାରେ ରଖିଲା ଓ କେଦାରକୁ ନେଇ ଟେବୁଲ ପାଖକୁ ଗଲା । ସେ ସେଠାରେ କେଦାରକୁ ଏକ ପୁରୁଣା କଳା ବୁର୍ଖା ଦେଖାଉଥିଲା ଓ କ'ଣ କହୁଥିଲା ମୋତେ ଶୁଭୁ ନଥିଲା ।

ତା'ପରେ ସେ ଦୁହେଁ କେଉଁଠି ଉଭେଇଗଲେ କିଛି ଜାଣି ହେଲାନି । ମିନିଟିଏ- ଦି ମିନିଟ୍ ପରେ କେଦାରର ହସିବା ଶବ୍ଦ ଶୁଭିଥିଲା ।

ପୁଣି କେଦାର ଆସି ନଥିଲା, ସେଇ ସିନ୍ଧୀ ଲୋକଟି ସେଇମିତି ଦମା ପେଲିଲାଭଳି ହେଇ ଆସି କହିଥିଲା 'ବିୟର୍', ତା'ପରେ ସେଇମିତି ନିଃଶ୍ୱାସ ନେଇ କହିଥିଲା 'ପିଇବ'... 'ମଗେଇବି' ?

'ପିଇବି'... ମୁଁ କହିବାରୁ ସେ ଗୋଟେ ପିଲାକୁ ସେଇମିତି ଶ୍ୱାସନେଇ ଇସାରା କଲା, ପିଲାଟି ବିୟର୍ ଆଣିଲା । ସିନ୍ଧୀ ଲୋକଟି ପିଇଲା ନାହିଁ । ମୁଁ ସଇଠି ବସି ପିଇଲି ।

'ଆପଣ' । ସେ ସେଇମିତି ଉର୍ଦ୍ଧ୍ୱଶ୍ୱାସ ନେଉଥିଲା । ପଚାରିଥିଲା, 'ବମ୍ବେ'- ଯାହାର ଅର୍ଥଥିଲା 'ରହନ୍ତିନି'...

'ନାଁ, ପୁନାରେ ରହେଁ' ମୁଁ କହିଲି ।

'ବୁଲିବାକୁ'... ସେ ପୁଣି ପେଲିହେଇ ନିଃଶ୍ୱାସ ନେଲା ।

'ନା', କାମରେ ଆସିଥିଲି । ମୁଁ ଉତ୍ତର ଦେଲି ।

'ବିଜ୍‌ନେସ୍'... ବହୁତ ଜୋର୍‌ରେ ଦମା ଶ୍ୱାସ ନେଲା ।

ନାଁ, ''ବ୍ୟକ୍ତିଗତ କାମ ଥିଲା, ଭିଓ୍ୱଣ୍ଡି ଯିବି ।''

ସେ ପୁଣି ସେଇଠି ବସି ସେଇମିତି ଉର୍ଦ୍ଧ୍ୱଶ୍ୱାସ ନେଇ ଚାଲିଥିଲା କେଦାର ଆସି ଆମ ସାମ୍ନାରେ ଛିଡ଼ାହେବା ପର୍ଯ୍ୟନ୍ତ । ତାକୁ ଦେଖି ସେଇ ସିନ୍ଧୀ ଲୋକଟି ହଡ଼ବଡ଼େଇ ଯାଇ ଛିଡ଼ା ହେଲା । ମୁଁ ବି ଦ୍ୱନ୍ଦ୍ୱଗ୍ରସ୍ତ ଥିଲି । ମୁଁ ଗ୍ଲାସ ଶେଷକରି ହଠାତ୍ କେଦାର ନିକଟକୁ ଚାଲି ଆସିଲି । ଆମେ ତିନିଜଣ ମଝିରେ ଥିବା ବଡ଼ ରୁମ୍‌ଯାଏ ଆସିଯାଇଥିଲୁ । କେଦାର ମୋର ବିୟର୍ ପଇସା ଦେଉଥିଲା ବେଳେ ପାଖ ଦୁଆର ଖୋଲିଲା । ମୁଁ କେବଳ ଏତିକି ଦେଖିଲି ଯେ ଜଣେ ସ୍ତ୍ରୀଲୋକ କେଦାରକୁ ତା' ପାନିଆଁ ଓ ଚାବିପେନ୍ଥା ଦେଲା ଏବଂ ସେଇ ଦମା ପେଲୁଥିବା ସିନ୍ଧୀ ପାଖରେ ମୋତେ ଠିଆ ହେଇଥିବାର ଦେଖି-ତାକୁ ପଚାରିଲା- ''ଆଉ କେହି ଅଛନ୍ତି କି ?''

ମୁଁ ବୁଲିପଡ଼ି ଦେଖିଲି- ''ଦୁଆରର ବନ୍ଧ ଉପରେ ହାତରଖି, ସାୟା ଓ ବ୍ଲାଉଜ୍ ପିନ୍ଧି ତୁମେ ଠିଆ ହେଇଥିଲ ବନ୍ନୋ । ଆଉ ପଚାରୁଥିଲ- ''ଆଉ କେହି ଅଛନ୍ତି କି ?''

ହଁ କିଏ- କିଏ ଆଉଜଣେ ବି ଥିଲେ !

ଲହରେଇ ଯାଉଥିବା ସମୟର ଏକ ଅନ୍ଧ କ୍ଷଣରେ ତୁମେ ଚିହ୍ନି ନେଇଥିଲ ମୋତେ ଏବଂ ତୁମ ଓଠରେ ଏକ ବଙ୍କା ସ୍ମିତହାସ୍ୟ ଉକୁଟି ଉଠିଥିଲା । କିମ୍ବା ସେ ଥିଲା ଏକ ଘୋର ତିରସ୍କାରର ହାସ୍ୟରେଖା । ହୁଏତ ଖୁବ୍ ସହଜ- କିଛି ଜାଣିପାରି ନଥିଲି ମୁଁ...

କିଏ ଜାଣେ, ତୁମେ ହୁଏତ ଏଇମିତି ପ୍ରତିଶୋଧ ନେଇ ଚାଲିଥିଲେ, ମୋ ଉପରେ ନିଜ ଉପରେ, ମୁନୀର୍ ଉପରେ । ନାଁ ପାକିସ୍ଥାନ ଉପରେ ?

ମୁଁ ସିଡ଼ିରେ ତଳକୁ ଓହ୍ଲେଇ ଆସୁଥିଲି । ଆଗରେ ଥିଲି ମୁଁ ଆଉ ପଛରେ କେଦାର । ଇଚ୍ଛା ହେଉଥିଲା ସିଡ଼ିରେ ଉପରକୁ ଚଢ଼ିଯାଇ ତୁମକୁ କହନ୍ତି, 'ବନ୍ନୋ ! କ'ଣ ଏସବୁ ହେବାର ଥିଲା ! ମୋ ଅବସ୍ଥା ଶେଷରେ ଏଇଆ ହେଲା । !'

ଏବେ ଆଉ କେଉଁ ସହର ଅଛି, ଯାହାକୁ ଛାଡ଼ି ମୁଁ ଚାଲିଯିବି ଆଗକୁ ।... କେଉଁ କେଉଁ ଜାଗାକୁ ଯିବି ଯେଉଁଠି ପାକିସ୍ଥାନ ନଥିବ... ? ଯେଉଁଠାରେ ମୁଁ ନଜେ ସ୍ୱୟଂସମ୍ପୂର୍ଣ୍ଣ ହେଇଯାଇ ନିଜର ସମସ୍ତ ସ୍ୱପ୍ନ ଓ ଅନୁଭବକୁ ନେଇ ବଞ୍ଚିରହିବି...

ବନ୍ନୋ ! ପ୍ରତ୍ୟେକ ସ୍ଥାନରେ ଏକ ପାକିସ୍ଥାନର ଅସ୍ତିତ୍ୱ ଅଛି, ଯିଏ ମୋତେ ଓ ତୁମକୁ ଆହତ କରୁଚି, ପିଟି ଚାଲିଚି... ଥରକୁ ଥର... ଆମକୁ ଭାଙ୍ଗିଦେଉଚି ଆଉ ଲହୁଲୁହାଣ କରି ଦେଇଯାଉଚି ବାରମ୍ବାର... !

# କେତେ ଯେ ପାକିସ୍ଥାନ

ଏ ଯାତ୍ରା ବାସ୍ତବରେ ଖୁବ୍ ଦୀର୍ଘ ! ଆଉ ମୁଁ ବି ବୁଝିପାରୁନି ଏ ପାକିସ୍ଥାନ କାହିଁକି ବାରମ୍ବାର ମୋତେ ବିଚଳିତ କରୁଛି । ସଲିମା ! ମୁଁ ତ ତୁମର କୌଣସି କ୍ଷତି କେବେ କରିନି... କିନ୍ତୁ ତୁମେ କାହିଁକି ନିଜର କ୍ଷତି କରିଲ ? ତୁମେ ହସୁଛ... କିନ୍ତୁ ମୁଁ ଜାଣେ, ତୁମର ଏଇ ହସ ମୋ ପାଇଁ ବିଷ-ଲେପିତ ତୀର ସଦୃଶ । ଏ ମେହେନ୍ଦୀର ଫୁଲ ନୁହଁ ସଲିମା... ପବନ ସଂସ୍ପର୍ଶରେ ଆସି ଚତୁର୍ଦ୍ଦିଗକୁ ମହକାଇଦିଏ ।

ହଁ ହସଲାଗେ... ଭାବିଲେ ସେଦିନର ମତୁଆଲା ପବନର କଥା । ତୁମେ ହିଁ ମୋତେ ସେଦିନ କହିଥିଲ ତୁମକୁ ପବନ ପାଗଳ କରିଦେଇଛି । କ'ଣ... ମନେଅଛି !

ମୁଁ ଜାଣେ... ତୁମର ସବୁ ମନେଅଛି । କାହିଁକି

ନା ନାରୀ କିଛିବି ଭୁଲେନା । କେବଳ ଅଭିନୟ କରେ ଯେ ସବୁକିଛି ଭୁଲିଯାଇଛି । କାରଣ ସେ ଏମିତି ନକଲେ ତା'ପାଇଁ ବଂଚିବା ବେଶ୍ ମୁସ୍କିଲ ହୋଇଯିବ । ତୁମକୁ ନାରୀ କିମ୍ୱା ସଲିମା କହିବାକୁ ମୋତେ ଖୁବ୍ ଅଡୁଆ ଲାଗୁଛି । ତୁମକୁ କେବଳ 'ବନ୍ନୋ' ବୋଲି ଡାକିବାକୁ ଇଚ୍ଛା ହେଉଛି । ସେଇ ବନ୍ନୋ, ଯିଏ ମେହେନ୍ଦୀର ଫୁଲ ତୋଳି ଆଣୁଥିଲା । ମନେଅଛି ତୁମର ସେ ବାସ୍ନା ବନ୍ନୋ... ଯେଉଁଥିରେ ତୁମର ମୁହଁର ସୁଗନ୍ଧ ଓ ମେହେନ୍ଦୀ ଫୁଲର ମହକ ମିଶି ରହିଥିଲା । ମେହେନ୍ଦୀ ଫୁଲଗୁଡ଼ିକୁ ମୋ ନାକପାଖକୁ ଆଣି ତୁମେ ଯେତେବେଳେ ଫୁଙ୍କି ଦେଇଥିଲ ଆଉ ବାସ୍ନା ଚାରିଆଡ଼େ ବିଚ୍ଛୁରିତ ହୋଇପଡୁଥିଲା, ତୁମେ ଫିସ୍ ଫିସ୍ କରି କହୁଥିଲ ''ଏହାର ମହକ କେବଳ ପବନରେ ଉଡ଼ିଉଡ଼ି ଯାଏ ।

ଏହା ସତ ଯେ ମୋତେ ପାଗଳ କରି ଦେଇଚି ସେହି ସୁଗନ୍ଧିତ ପବନ । ସେଇ ବାସ୍ନାୟିତ ହାୱା... ଆଉ ଏଇ ବାସ୍ନା ବିଚ୍ଛୁରିତ ମୁହୂର୍ତ୍ତରେ ତୁମକୁ ବନ୍ନୋ ବୋଲି ଡାକିବାକୁ ମୁଁ ବେଶ୍ ଆଗପଛ ହେଉଛି । ଜାଣେନା, ଏ ନାମକୁ ତୁମେ ଆଦରିନେବ କି ନାହିଁ, ଏ ନାମରେ ଏବେ ଆଉ ଅଛି ବା କ'ଣ ?

ଜାଣିଛ ! ସେଦିନ ରାତିରେ ମୁଁ ଚାହୁଁଥିଲି ପାହାଚରେ ଉପରକୁ ଛଡ଼ିଯାଇ ତୁମକୁ କିଛି ପଚାରିବି ବୋଲି... ତୁମକୁ କିଛି ମନେ ପକାଇଦେବି... କିନ୍ତୁ ଏମିତି କିଛି କ'ଣ ଅଛି ଯେ, ଯାହା ତୁମର ମନେନାହିଁ ?

ହାୟ ! ଠିକ୍‌ଭାବେ ମନେପଡୁନି ମୋର, କେତେ ଯେ ପାକିସ୍ଥାନ ସୃଷ୍ଟି ହେଲେ ! ଗୋଟିଏ ପାକିସ୍ଥାନ ଗଠିତ ହେବା ସଙ୍ଗେ ସଙ୍ଗେ କେମିତି ଓ କାହିଁକି ସବୁକଥା ଦ୍ୱନ୍ଦ୍ୱ ମଧ୍ୟକୁ ଠେଲି ହୋଇଗଲା ।

ସେଦିନର ଅନ୍ଧାର ରାତି ବି ଥିଲା ଖୁବ୍ ଭୟାବହ । ମନେନାହଁ ପଛପଟେ ଥିବା ଅଶ୍ୱତ୍ଥ ଗଛ କହିଥିଲା ନା ବଦରୁ ମିଆଁ, କାଦିର୍ ମିଆଁ, ଶଳା ପାକିସ୍ଥାନ ଗଠନ ହେଲା... ଭାଇ ପୂରା ପାକିସ୍ଥାନ ତିଆରି ହେଲା ।''

ହଁ ବନ୍ଧୁ ! ମୋର ଏଇ ସୁଦୀର୍ଘ ଯାତ୍ରାର ତିନୋଟି ପର୍ଯ୍ୟାୟ ଅଛି । ପ୍ରଥମତଃ, ମୋତେ ଯେଉଁଦିନ ମନକୁ ଆହ୍ଲାଦ ଦେଇଥିଲା ମେହେନ୍ଦୀଫୁଲର ବାସ୍ନା... ଦ୍ୱିତୀୟତଃ, ଜୋଛନାଭିଜା ରାତିରେ ମୁଁ ବନ୍ନୋକୁ ଯେଉଁଦିନ ଦେଖିଥିଲି ନଗ୍ନ ରୂପରେ... ତୃତୀୟତଃ ସେଇ ଘରର ଦୁଆରବନ୍ଧରେ ବନ୍ନୋ ହାତଦେଇ ଛିଡ଼ା ହେଇଥିଲା ଏବଂ ପଚାରୁଥିଲା ''ଆଉ କେହି ଅଛନ୍ତି କି ?''

''ହଁ, ଆଉ କେହିଜଣେ ଥିଲା... ପ୍ରାୟ...''

ବନ୍ନୋ... ଲହରେଇ ଯାଉଥିବା ସେଇ ଅନ୍ଧ ମୁହୂର୍ତ୍ତରେ ତୁମେ କେବଳ ହସିଥିଲ । କ'ଣ ବିଗାଡ଼ିଥିଲି ତୁମର ମୁଁ ? କାହା ଉପରେ ପ୍ରତିଶୋଧ ନେଉଥିଲ ତୁମେ ? ମୋ

ଉପରେ ? ନା ମୁନିର୍ ଉପରେ ? ନା ପାକିସ୍ଥାନ ଉପରେ ? ଅଭିଶାପ ଦେଉଥିଲ ମୋତେ, ମୁନିର୍‌କୁ, ନା ପାକିସ୍ଥାନକୁ ? ନା...

ଏଇ ପାକିସ୍ଥାନ ଆମ ଭିତରେ ବାରମ୍ବାର ଧସେଇ ପଶୁଛି... ଏହା ତୁମ ଓ ମୋ ମଧ୍ୟରେ କୌଣସି ଏକ ଦେଶ ନୁହଁ.. ଏହା ଏକ ଦୁଃଖଦ ସତ୍ୟର ଅନ୍ୟନାମ ବ୍‌ନ୍ନୋ... ଏହା ହେଉଛି ତୁମକୁ ଓ ମୋତେ ଦୂରେଇ ରଖୁଥିବାର ଏକ ଅବସ୍ଥା... ଯାହା ଆମ ମଧ୍ୟରେ ଏକ ନିଃଶବ୍ଦ ପ୍ରାଚୀର ସୃଷ୍ଟି କରିଛି । ଯାହା ତୁମର ପ୍ରିୟ ପରିଜନ, ସମ୍ପର୍କୀୟ କିମ୍ବା ତୁମ ଧର୍ମର ଲୋକମାନଙ୍କ ପ୍ରତି ଅନ୍ୟମାନଙ୍କର ବିଶ୍ୱାସକୁ ଭାଙ୍ଗିଦେଉଛି । ସେ ସମୟରେ ମଣିଷ ସୁଖଦ ଅନୁଭୂତିକୁ ଅନୁଭବ କରିପାରୁନି... ଖୁସିର ମୁହୂର୍ତ୍ତକୁ ବି ମନଭରି ଉପଭୋଗ କରିପାରୁନି... କେଉଁଠି କିଛି ଊଣା ରହୁଛି... ଅନୁଭବର ଅଭାବିତ ଅବସ୍ଥାର ନାମ ହେଉଛି ପାକିସ୍ଥାନ, ଅର୍ଥାତ୍ ମେହେନ୍ଦୀର ଫୁଲଥିବ, କିନ୍ତୁ ପବନ ନଥିବ... କିମ୍ବା କେହି ଫୁଙ୍କି ଫୁଙ୍କି ସେଥିରେ ବାସ୍ନା ଭରୁନଥିବ । ଯେମିତିକି ଫୁଲଥିବ, କିନ୍ତୁ ସେଥିରେ ରଙ୍ଗ ଓ ବାସ୍ନା ନଥିବ... ବାସ୍ନା ଥିବ କିନ୍ତୁ ପରିବେଶକୁ ବାସ୍ନାରେ ଭିଜେଇବାକୁ ପବନ ନଥିବ । ଅର୍ଥାତ୍ ଜମାଟ ବାନ୍ଧିଥିବା ଅଭାବିତ ଅନୁଭବର ନାମ ହିଁ ପାକିସ୍ଥାନ ।

ଶୁଣ, ଯଦି ଏସବୁ ଘଟିନଥାନ୍ତା, ତେବେ ମୁଁ ରାତାରାତି ଚୁନାର ଛାଡ଼ି କାହିଁକି ପଳାଇ ଯାଇଥାଆନ୍ତି ! ଏ ସେଇ ଚୁନାର୍, ଯେଉଁଠି ମିଶନ୍ ସ୍କୁଲ ବାଡ଼ରେ ମେହେନ୍ଦୀ ଫୁଲ ଫୁଟୁଥିଲା... ଯେଉଁଠି ପ୍ରତିଦିନ ଆମେ ଦୁହେଁ ଭେଟୁଥିଲେ ଗଙ୍ଗାଘାଟ କୂଳରେ ଥିବା ଅଶ୍ୱତ୍ଥଗଛ ମୂଳରେ... ଆଉ କେବେ ରାଜା ଭର୍ଥରିଙ୍କ ଦୁର୍ଗର ଭଗ୍ନ ପାଚେରୀ ଉପରେ ବସି କଇଁଆ ଖାଉଥିଲେ ! ଆଉ ମୋର ବେଶ୍ ମନେଅଛି ସେଦିନର ସନ୍ଧ୍ୟା । ଯେଉଁଦିନ କମ୍ପାଉଣ୍ଡର ଜାମିନ୍ ଅଲ୍ଲୀ ଆସି ଦାଦାଙ୍କୁ କହିଥିଲା, ''ଆଉ କଛି ହେଇପାରବନି, ଲୋକେ ବି ମାନିବେନି... ମଙ୍ଗଲ୍‌କୁ କିଛିଦିନ ପାଇଁ ବାହାରକୁ ପଠାଇଦିଅ । ଏଠି ରହିଲେ ବାରମ୍ବାର ବନ୍ନୋ କଥା ଉଠିବ । ବିବାହ ତ ହୋଇପାରିବନି, କେବଳ ଦଙ୍ଗାହଙ୍ଗାମା ହିଁ ସାର ହେବ । ଏହାପରେ ମୋ ଅବସ୍ଥା କ'ଣ ହୋଇଥିବ ସେକଥା ତୁମେ କେବେ ଭାବିପାରିବନି ବନ୍ନୋ, ଚୁନାର୍ ମୋତେ ଛାଡ଼ିବାକୁ ହେବ... ହଁ ଛାଡ଼ିବାକୁ ହେଲା... ଚୁନାର୍‌ରେ ରାତି କେମିତି ହେଉଥିଲା ? କାଶୀଘାଟକୁ ଆସୁଥିବା ନାଆ... ଭର୍ଥରୀ ଦୁର୍ଗର ନିଶବ୍ଦ ପାଚେରୀ... ଆଉ ଗଙ୍ଗାକୂଳରେ ଥିବା ସେଇ ଛୋଟ ଟୁଙ୍ଗୀଟିଏ, ଯାର ଛପରେ ଉପରେ ଚଢ଼ି ମୁଁ ବନ୍ନୋର ପାଦଶବ୍ଦ ଶୁଣୁଥିଲି । ନାଳଗୁଡ଼ିକର କଡ଼େ କଡ଼େ ମାଟିକୁ ଚିରି ତିଆରି ହୋଇଥିଲା ପାଣିଧାର, ଯାହାକୁ ପାରିହୋଇ ବନ୍ନୋ ବାରମ୍ବାର ଗଙ୍ଗାକୂଳକୁ ଆସିବାକୁ ପ୍ରୟାସ କରୁଥିଲା, କିନ୍ତୁ ବିଫଳ ହେଉଥିଲା । ପ୍ରତୀକ୍ଷା... କେବଳ ଦୀର୍ଘ ପ୍ରତୀକ୍ଷା... ।

ଆମ ଅଜାଣତରେ ଲୋକେ ଆମକୁ ବଡ଼ ବୋଲି ମାନି ନେଇଥିଲେ ।

ବେଳେବେଳେ ଆମର ଅତି ସହଜ ମିଳାମିଶାକୁ ବଡ଼ ବଡ଼ ଘଟଣାରେ ପରିବର୍ତ୍ତିତ କରି ଦିଆଯାଉଥିଲା । ଏସବୁ କଥାକୁ ନେଇ ବସ୍ତିରେ ହୋ ହାଲ୍ଲା ହେବ ଏହା ଥିଲା ମୋର ଧାରଣାର ବାହାରେ । ଏସବୁ କାହିଁକି ଓ କେବେମ ହେଲା ବନ୍ନୋ ? କିନ୍ତୁ ତୁମେ କ'ଣ ଜାଣିଥିଲ ଏସବୁ ? ସତକୁହ ବନ୍ନୋ, ପ୍ରକୃତରେ ଆମେ କ'ଣ କଥା ହୋଇଥିଲେ ? ଠିକ୍ ସେଇଭଳି ତିନିଟି ଅବସ୍ଥା ଦେଇ ମୁଁ ଗତିକଲି- କେଉଁଠି ଅଟକିଯାଇ ଆମେ ଟିକେ କଥା ହୋଇ ପାରିଲେନି... ଯେତେବେଳେ ମେହେନ୍ଦୀ ଫୁଲକୁ ପବନ ଚୁମୁଥିଲା ଯେତେବେଳେ ଚାନ୍ଦିନୀ ରାତିରେ ତୁମକୁ ପ୍ରଥମ ଥର ନଗ୍ନ ରୂପରେ ଦେଖିଥିଲି ସେ ସମୟରେ ବି ନୁହଁ, ଆଉ ଯେବେ ତୁମେ କବାଟବନ୍ଧରେ ହାତଦେଇ ସେଇ ବଦନାମ୍ ଗଳିରେ ଛିଡ଼ା ହୋଇଥିଲ ଓ ପଚାରୁଥିଲ ''କ'ଣ, ଆଉକେହି ଅଛନ୍ତି କି ?'' ସେତେବେଳେ ବି ନୁହଁ! ମେହେନ୍ଦୀଫୁଲ !

ଚୁନାର ! ଯେଉଁଠି ଥିଲା ତୁମର ଓ ମୋର ଘର । ମୋ ଘର ପାଖରେ ଥିଲା ସେଇ ଇଟା ପଡ଼ିଥିବା ଗଳି- ଯାହା ସହର ଓ ବଜାର ପର୍ଯ୍ୟନ୍ତ ଲମ୍ବି ଯାଇଥିଲା । ଯାହା ଗଙ୍ଗା ନଦୀକୂଳରୁ ଯାଇ ରାଜା ଭରଥରିଙ୍କ ଦୁର୍ଗର ବଡ଼ଫାଟକ ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା । ଯେଉଁ ସଡ଼କ ଦୁର୍ଗ ଆଡ଼କୁ ମୋଡ଼ିଯାଉଥିଲା, ସେଇଠି ଥିଲା ସେ ମହାସୁଲ ଆଦାୟ ହେଉଥିବା ଟୁଙ୍ଗୀ । ଗଙ୍ଗାଘାଟରୁ ଓହ୍ଲାଇ ଦିଆଯାଉଥିବା ଜିନିଷ ଉପରେ କର ଆଦାୟ ହେଉଥିଲା । ମାଛ, କଙ୍କଡ଼ା, କଇଁଛ ଆସୁଥିଲା, ଆମ୍ବ ମଧ୍ୟ ସେପଟରୁ ଏପଟକୁ ଆମଦାନୀ ହୋଇ ଆସୁଥିଲା । ସେଇ ଟୁଙ୍ଗୀରେ ରହୁଥିବା ମୁନ୍‌ସୀବାବୁ ରାମନାମ ଜପୁଥିଲେ ଓ ପ୍ରତିଦିନ କର ଆଦାୟ କରୁଥିଲେ । ଦିନରେ ଦଶଥର ସେ ଅଶ୍ୱତ୍ଥ ଗଛ ମୂଳରେ ଥିବା ମହାଦେବଙ୍କୁ ଜଳଲାଗି କରୁଥିଲେ ଓ ଛପର ତଳେ ବସି ତିନି ଚାରିଟି ପିଲାଙ୍କୁ ପାଠ ପଢ଼ାଉଥିଲେ । ସେଇ ଟୁଙ୍ଗୀ ପାଖରୁ କହୁଣି ମୋଡ଼ିଲାଭଳି ଅଙ୍କାବଙ୍କା ଗଳିଟିଏ ଥିଲା ଯାହା ବନ୍ନୋ ଘର ବସ୍ତି ପାଖରେ ଶେଷ ହୋଇଥିଲା । ସେଇଠୁ ପଥୁରଆ ସଡ଼କଟିଏ ମିଶନ୍ ସ୍କୁଲ ଯାଏ ଲମ୍ବିଥିଲା ଓ ସେଠି ଇଂରେଜ ଅମଳର ପୁରୁଣା କୋଠିଟିଏ ଥିଲା । ଏଇଠି ଥିଲା ମେହେନ୍ଦୀ ଗଛର ବାଡ଼ ଓ ଦୁଦୁରା ଫୁଲର ବଣ । ଏଇ ଦୁଦୁରା ଗଛର ବଣ ହିଁ ମୋତେ ଖୁବ୍ ଦୁଃଖ ଦେଇଥିଲା ଯେତେବେଳେ ବସ୍ତିରେ ମୋତେ ଓ ବନ୍ନୋକୁ ନେଇ ଲାଗି ରହିଥିଲା ଉତ୍ତେଜନା । ବନ୍ନୋ ବସ୍ତି ଭିତରୁ ବାହାରି କୌଣସି ପ୍ରକାରେ ଟୁଙ୍ଗୀ ପର୍ଯ୍ୟନ୍ତ ଆସି ମୋତେ କହିଥିଲା ''ମୌଲବୀମାନଙ୍କର ସାଥୀମାନେ ଯଦି ବେଶୀ ବଦମାସି କରନ୍ତି ମଙ୍ଗଲ, ମୁଁ ଦୁଦୁରାଫଳ ଖାଇ ସବୁଦିନ ପାଇଁ ଶୋଇଯିବି, ଏ ସହର ଛାଡ଼ି ତୁମେ କୁଆଡ଼େ ଯାଅନା । ଯଦି ସହର ଛାଡ଼ିବ ତୁମ ଗଙ୍ଗାମାଆ ଏଇଠି ଅଛନ୍ତି ଜାଣିବ ।

ବେଶୀ କିଛି କଥା ହୋଇପାରିଲିନି । ସେ ଚାଲିଗଲା । ମୁଁ ବି ତାକୁ ବତେଇ ପାରିନଥିଲି ଯେ ଆମଘରେ କି ପ୍ରକାର ପ୍ରଳୟ କାଣ୍ଡ ଘଟୁଛି, ଜେଜେଙ୍କୁ ପ୍ରତିଦିନ

ବଜାରରେ କିଛି ଲୋକ ଧମକାଉଥିଲେ, ଯେଉଁମାନଙ୍କୁ ସେ ଚିହ୍ନି ବି ନଥିଲେ । ସମସ୍ତଙ୍କର ଡରଥିଲା, ଯେ କୌଣସି ଦିନ ମୋତେ ହତ୍ୟା କରାଯାଇପାରେ ଅଥବା ଯେ କୌଣସି ରାତିରେ ମୁସଲମାନମାନେ ଆମଘରେ ପଶି ଦଙ୍ଗା ହଙ୍ଗାମା କରିପାରନ୍ତି ।

ପାକିସ୍ଥାନ ତ ତିଆରି ହୋଇସାରିଥିଲା, କିନ୍ତୁ ତୁମ ବାପା ବସି ବସି ଏ ବିଭାଜନ ବିରୁଦ୍ଧରେ ଭରଥରିନାମା ଲେଖୁଥିଲେ । ସମସ୍ତେ କହୁଥିଲେ ଏ ଡିଲ୍ ମାଷ୍ଟରର ଦିମାକ ଖରାପ ହୋଇଯାଇଛି । ଏ ତୁର୍କୀ ନୁହେଁ, ଏଇଠିକାର କେଉଁ ଇଆଡୁ ସିଆଡୁ ଜାତିର ଲୋକ । ସେତେବେଳେ ଆମେ ଜାଣିଲୁ ଯେ, ସେଇମାନେ ହିଁ ମୁସଲମାନ । ଯେଉଁମାନେ ଇରାନୀ ଓ ତୁର୍କୀ ଅଟନ୍ତି । ଡ୍ରିଲ ମାଷ୍ଟରଙ୍କୁ ସମସ୍ତେ ଅଲଗା କରିଦେଇଥିଲେ । କିନ୍ତୁ ତାଙ୍କରି ବନ୍ନୋକୁ ନେଇ ସଭିଏଁ ଆଜି ବାହାରିପଡ଼ିଥିଲେ । ଯେମିତି ସମସ୍ତେ ତାଙ୍କର ଥିଲେ ଖୁବ୍ ଶୁଭଚିନ୍ତକ । ଡ୍ରିଲ ମାଷ୍ଟରବାବୁ ଆମ ଘରକୁ ଲୁଚି ଲୁଚି ଆସି ଥରେ ମୋ ଜେଜେଙ୍କ ସହ କଥା ହୋଇଥିଲେ, ସେହି ସମୟରେ ସେ ଭରଥରିନାମା ଲେଖୁଥିଲେ । ମୁଁ ଠିକ୍ ସେଇଦିନ ଏକଥା ଜାଣିଲି, ଯେଉଁଦିନ ଘର ଲୋକମାନଙ୍କର ବ୍ୟତିବ୍ୟସ୍ତତାକୁ ଦେଖି ଘରଛାଡ଼ି ଆସି ଗଙ୍ଗାକୂଳର ସେଇ ଟୁଙ୍ଗୀରେ ବସି ରହିଥିଲି, ଆଉ ଚୁପ୍‌ଚାପ୍ ମୋତେ ସେଠାରୁ ବିଦାୟ ଦେବା ଆଗରୁ ମୁନ୍‌ସୀବାବୁ ସେ ଗୀତର କେତେ ପୃଷ୍ଠା ମୋ ହାତରେ ଧରେଇ ଦେଇଥିଲେ ।

ସେଦିନର ରାତି ଥିଲା ଖୁବ୍ ଭୟାବହ, ବନ୍ନୋ । ବସ୍ତିରେ କେବଳ କାଳର କଳାଛାଇ ଘୂରୁଥିଲା । ସମସ୍ତେ ଅଜଣା ଆତଙ୍କରେ ଥିଲେ ବ୍ୟତିବ୍ୟସ୍ତ । କିଏ ଜାଣେ କେତେବେଳେ କିଛି ଘଟିଯିବ ? କେତେବେଳେ 'ୟା ଅଲ୍ଲୀ, ୟା ଅଲ୍ଲୀ'ର ଆୱାଜ ଉଠିବ । ଆଉ ବସ୍ତିରେ ଖୁନ୍ ଖରାପ ହୋଇଯିବ । ଗଙ୍ଗା ମଧ୍ୟ ସେଦିନ ଥିଲା ଖୁବ୍ ଅଶାନ୍ତ । ନଦୀତଟର ଅଶ୍ୱତ୍ଥଗଛ ବି ଅସ୍ତବ୍ୟସ୍ତ । ପବନ ବହୁଥିଲା ଖୁବ୍ ଜୋର୍‌ରେ । ଅନ୍ଧାରରେ ଦୁର୍ଗ ଭିତରୁ ସାଏଁ ସାଏଁ ଆବାଜ ଆସୁଥିଲା । ଆଉ ପାଞ୍ଚ ସାତଜଣ ହିନ୍ଦୁମାନଙ୍କ ସହ- ଜେଜେ ମୋତେ ଷ୍ଟେସନକୁ ଛାଡ଼ିବାକୁ ଆସୁଥିଲେ । ପରଦେଶରେ ରହି ବି ମୁଁ । ଯେମିତି ବଞ୍ଚିରହେ ଓ ଭଲରେ ରହେ । ପ୍ରଥମେ ସମସ୍ତେ ଚିନ୍ତାକଲେ ମୁଁ ମାମୁଁଙ୍କଘର ଜୈନପୁର ଚାଲିଯାଏ, ପରେ ମୋତେ ଜଣାନାହିଁ ଯେ ପୁଣି କେମିତି ସ୍ଥିରହେଲା ମୁଁ ବମ୍ବେ ଯିବି ଓ ସେଠାରେ କୁର୍ଲା ୱାର୍କସପ୍‌ରେ କାମ କରୁଥିବା ମଉସାଙ୍କ ପାଖରେ ରହିବି । ସେଇଠି ଚାକିରି ଖୋଜିବି ।

ସେଦିନ ସେ ରାତି କେମିତିଥିଲା ବନ୍ନୋ, ଆଉ କେମିତି ବେଇଜ୍ଜତ ହୋଇ ବାହାରିଥିଲି ମୁଁ ଘରୁ । ମୁଣ୍ଡ ଭିତରେ ହଜାର ହଜାର ହାତୁଡ଼ିରେ ଯେମିତି କିଏ ପିଟୁଥିଲା ମୋତେ । ମନରେ ଭାବୁଥିଲି କି ଏଠାରୁ ଘରକୁ ଫେରିଯାଏ ଓ ହାତରେ ଖଣ୍ଡାଧରି ତୁମର ସେହି ଗଣ୍ଡଗୋଳ ସୃଷ୍ଟିକାରୀ ମୁସଲମାନ ମାନଙ୍କ ଉପରେ ଆକ୍ରମଣ କରେ ।

ରକ୍ତର ହୋରି ଖେଳି ଖେଳି ମୁଁ ତୁମକୁ ଜିତିନିଏଁ ଆଉ ଯଦି ଜିତି ନପାରେ ତେବେ ତୁମକୁ ନିଶେଷ କରି ଗଙ୍ଗାନଦୀରେ ଜଳସମାଧି ଗ୍ରହଣ କରେ । ମୋତେ ଡ୍ରିଲମାଷ୍ଟର ତ କେବେ କିଛି କହିନଥିଲେ, ସେ କେବଳ ନୀରବ ରହିଥିଲେ ।

ସହରକୁ କବଳିତ କରିନେଇଥିଲା ଭୟଗ୍ରସ୍ତତାର କରାଳ ସର୍ପ । ମୋ ଜେଜେଙ୍କୁ ଜଣେଇ ଦିଆଯାଇଥିଲା କି ଆସନ୍ତାକାଲିର ସକାଳଠାରୁ ଯେମିତି ମୋ ମୁହଁ ଏଠାରେ ଆଉ ଦେଖାନଯାଏ । ଅଧରାତି ଯାଏ ବିଚାର ବିମର୍ଷ ଚାଲିଲା । ଶେଷକୁ କେବଳ ପାର୍ଶଲ ଟ୍ରେନ୍ ହିଁ ଥିଲା, ଯାହା ମୋଗଲ ସରାଇ ପର୍ଯ୍ୟନ୍ତ ଯାଉଥିଲା ।

ହଁ, ପାଞ୍ଚ ସାତଜଣ ହିନ୍ଦୁ ମୋତେ ଷ୍ଟେସନରେ ପହଞ୍ଚାଇଦେଲେ । ବଜାର ଆଡୁ ଯାଉଥିବା ସଡ଼କ ଆଡ଼େ ଆମେ ଯାଇନଥିଲୁ । ଦୁର୍ଗଠାରୁ ଲମ୍ବିଥିବା ଶୁନ୍‌ଶାନ୍ ସଡ଼କରେ ଆମେ ଅନ୍ଧାର ରାତିରେ ଷ୍ଟେସନ ଆଡ଼କୁ ଚାଲିଥିଲୁ । ଟୁଙ୍ଗୀଘରର ମୁନ୍‌ସୀବାବୁ ଲଣ୍ଠନ ନେଇ ଆମ ପାଖକୁ ଆସିଥିଲେ ଓ ମୋର ଝାଳଭିଜା ହାତରେ ଡ୍ରିଲମାଷ୍ଟରଙ୍କ ଲିଖିତ ଭରଥରନାମାରେ କେଇ ପୃଷ୍ଠା ଧରେଇ ଦେଇଥିଲେ । ପାର୍ଶଲ ଟ୍ରେନ ଅଢ଼େଇଟା ବେଳେ ଛାଡୁଥିଲା । ମୋ ଦାଦା ଖୁବ୍ ବ୍ୟସ୍ତ ଓ ବିବ୍ରତ ଲାଗୁଥିଲେ । ଲାଗୁଥିଲା ଯେମିତି ମୋତେ ସହରରୁ ହଟାଇ ଦିଆଯିବାପରେ ବି ଦଙ୍ଗା ହେବା ନିଶ୍ଚିତ । ଆଉ ଷ୍ଟେସନରୁ ଫେରିଆସି ହିନ୍ଦୁମାନେ ହିଁ ଦଙ୍ଗା କରିବେ । ଢଳି ଯାଉଥିବା ରାତ୍ରିର ଅନ୍ତିମ ପ୍ରହରରେ ଏମାନେ ମୁସଲମାନମାନଙ୍କୁ ନିଷ୍ଠେ ଚିରି ଫାଡ଼ିଦେବେ । ହିନ୍ଦୁମାନଙ୍କର ହିନ୍ଦୁ ହେବାବି କେତେ କଷ୍ଟକର ବନ୍ନୋ । ଏହା ହେବାଦ୍ୱାରା ନିଶ୍ଚିତ କିଛି ପଛରେ ଅଛନ୍ତି ସେମାନେ ।

ସେଦିନ ବିଦାୟ ଖୁବ୍ ବେଦନାଦାୟକ ଥିଲା ବନ୍ନୋ । ପାହି ଆସୁଥିବା ରାତ୍ରିର ପବନରେ ଥିଲା ଉତ୍ତେଜନା ଓ ଷ୍ଟେସନର ପଥର ଚଟାଣ ଥିଲା ଖୁବ୍ ଥଣ୍ଡା । ଷ୍ଟେସନ ସାମନାରେ ବିନ୍ଧ୍ୟ ପର୍ବତର ଛୋଟ ପାହାଡ଼ ଓ ଲମ୍ବା ତାଳଗଛସବୁ ଚୁପ୍‌ଚାପ୍ ଛିଡ଼ା ହୋଇଥିଲେ । ତୁମକୁ ଏସବୁ କେମିତି କହିବି ବନ୍ନୋ, ମୁଁ ଘରଠାରୁ ଏମିତି ବିଚ୍ଛିନ୍ନ ହୋଇଯିବି ବୋଲି କ'ଣ କେବେ ସ୍ୱପ୍ନରେ ଭାବିଥିଲି ! ନିଜ ସହରରୁ ବେଇଜ୍ଜତ ହେବା ପରେ କ'ଣ ଅନ୍ୟ ସହରରେ କିଏ କେବେ ଶାନ୍ତିରେ ରହିପାରେ । ମୋର ବାରମ୍ବାର ମନେପଡୁଛି ସେହି ଗଳିରାସ୍ତା, ଯେଉଁଠୁ ବନ୍ନୋ ବାହାରି ଆସୁଥିଲା, ଆଉ ମୁଁ ସେଇ ଟୁଙ୍ଗୀ ପାଖରେ ବସି ତାକୁ ଦୀର୍ଘ ସମୟ ପ୍ରତୀକ୍ଷା କରୁଥିଲି । ଶେଷରେ ନିରାଶ ହୋଇଯାଉଥିଲି ସେଇ ଗଳିଆ ଆଡ଼କୁ ଯେଉଁଠି ମେହେନ୍ଦୀଫୁଲ ଫୁଟୁଥିଲା, ଏହା ଭାବି ସନ୍ତୁଷ୍ଟ ହେଉଥିଲି ଯେ, ବନ୍ନୋ ପ୍ରାୟ ଏ ପର୍ଯ୍ୟନ୍ତ ଆସିଥିବ । ଆଉ ଆଗକୁ ବଢ଼ିନଥିବ । କେହି ତାକୁ ଦେଖିନେଇ ବାରଣ କରିଥିବ, ଅଟକେଇ ଥିବ ଓ ଆଗକୁ ବଢ଼ିବାରେ ବାଧା ହୋଇଥିବ ! ସତକଥା ବନ୍ନୋ, ସେଇଦିନରୁ ମୋ ଛାତି ଭିତରେ ଗୋଟେ ପାକିସ୍ତାନ କଣ୍ଟା ଭଳି ଲାଖି ଯାଇଛି । ଲୋକମାନଙ୍କର କଥା ବଦଳି ଯାଇଥିଲା ବା ଅଧା ରହିଯାଇଥିଲା । ବସ୍ତିକୁ ବନ୍ଦ

ହୋଇଯାଇଥିବା ପବନର ପ୍ରବାହ, ଆଉ ଲାଗୁଥିଲା ଯେମିତି ସମସ୍ତେ ବନ୍ନୋକୁ ଘେରି ନେଇଛନ୍ତି । ଲାଜ, ଭୟ, କ୍ରୋଧ, ଲୁହ, ରକ୍ତ, ଭଗ୍ନତା, ପାଗଳାମି, ପ୍ରେମ ଏମିତି କେତେ କ'ଣ ପ୍ରଚଣ୍ଡ ଗତିରେ ଜଳୁଥିଲେ ମୋ ଭିତରେ ଭିତରେ । ସତକହୁଛି ଏସବୁ ସଂଘଟିତ ହେଲାପରେ ବି ଯଦି ବନ୍ନୋ ମତେ ମିଳିଯାଇଥାନ୍ତା ତା'ହେଲେ ଆଉକିଛି ହୁଏତ ଘଟିନଥାନ୍ତା, ଯାହା ହେବାର ଥିଲା ହୋଇସାରିଥିଲା ।

ପାର୍ଶଲ ଗାଡ଼ିରେ ବସି ମୁଁ ଡ୍ରିଲ ମାଷ୍ଟର ଲେଖିଥିବା ସେଇ ଦେଶ ବିଭାଜନର କରୁଣ ସଙ୍ଗୀତ ଭରଥରିନାମା ପଢ଼ିବାରେ ଲାଗିଥିଲି । ହଁ ଭାରତର ବିଭାଜନ ଥିଲା ଏକ କିଣାବିକା । ନିମ, ଅରଖ, ମେହେନ୍ଦୀ ଓ ଦୁଦୁରା ଫୁଲ କ'ଣ ନର୍ଗିସ ଠାରୁ କମ୍ ଲୋଭନୀୟ ଥିଲେ । କିନ୍ତୁ ସେଇ ପାକିସ୍ଥାନର ଆମେ କ'ଣ କରିପାରିଥାନ୍ତେ । ହଁ, ଗାଡ଼ି ଚାଲିଯାଉଥିଲା ଆଗକୁ ଆଗକୁ । ଆଉ ପଛକୁ ଫେରିବାର ମୋହ ଧୀରେ ଧୀରେ ମଉଳି ଯାଉଥିଲା...

ମୁଁ ଜାଣିଥିଲି ମାଷ୍ଟରବାବୁଙ୍କର ଚୂନାର୍‌ରେ ଶ୍ୱାସରୁଦ୍ଧ ହେଲା ଭଳି ଅବସ୍ଥା ହୋଇସାରିଥିବ । ବନ୍ନୋର ହାଲ୍ କିଛି ଜଣାନଥିଲା । କେବଳ ଏତିକି ଭାବୁଥିଲି ଯେ, ସେ ଗଙ୍ଗାନଦୀରେ ବୁଡ଼ି ପ୍ରାଣତ୍ୟାଗ କରିଥିବ । ଯଦି ଥାଏ, ସେ କେଉଁଠି ଥିବ ? କାହା ସାଥିରେ ହସୁଥିବ, କାନ୍ଦୁଥିବ, ଭାବୁଥିବ ଓ ଖୁସି ହେଉଥିବ । ରାତିରେ କାହାର ବିଛଣାରେ ଉଷ୍ଣତା ଭରି ଦେଉଥିବ । ପ୍ରେମ କରୁଥିବ, ମାଡ଼ ଖାଉଥିବ । ଜବରଦସ୍ତିକୁ ବରଦାସ୍ତ କରୁଥିବ । ସ୍ତ୍ରୀଟିଏ ଭଳି ଖୁବ୍ ଶୁଭ ମନାସୁଥିବ । ନିଜ ହାତ ମେହେନ୍ଦୀର ରଙ୍ଗରେ ରଙ୍ଗାଉଥିବ । ଅତୀତର ସବୁ କଥାକୁ ଭୁଲି ଯାଇଥିବ । ଯାହା ଭୁଲିପାରି ନଥିବ, ସେହି ଅଟକି ଯାଇଥିବା ସମୟ ତା' ପାଇଁ ପାକିସ୍ଥାନ ହେଇଯାଇଥିବ, ତାକୁ କେବଳ ଦୁଃଖ ଦେବାକୁ....

ହଁ ବନ୍ନୋ ଯାହା ଘଟିଗଲା... ଗଲା । ମୁଁ ମୋଗଲସରାଇରୁ ଆହ୍ଲାବାଦ ଗଲି ଏବଂ ଆହ୍ଲାବାଦରୁ ବମ୍ବେ, କୁର୍ଲାଠାରେ ରେଲୱେ ୱାର୍କସପ୍‌ରେ ମଉସା କିଛି କାମ ଯୋଗାଡ଼ କରିଦେଲେ । କିଛିଦିନ ସେଠାରେ ବିତେଇ ପୁଣି ପୁନା ଗଲି, ଯେଉଁଠି ଏକ କାରଖାନାରେ ଅକ୍ଷମ ଲୋକମାନଙ୍କର ହାତଗୋଡ଼ ତିଆରି ହେଉଥିଲା । ମୋତେ ଜଣାଥିଲା ଯେ ଆଉ ତୁମ ପରିବାର କିମ୍ବା ମୋ ପରିବାରର କେହି ସେ ଚୁନାର୍ ନାମକ ସ୍ଥାନରେ ଆଉ ରହିପାରିବେ ନାହିଁ । ଆଉ ମୁଁ ବି ଜାଣିନଥିଲି ଯେ କେବେ ମଧ ଏତେଦୂରକୁ ଚାଲିଯିବେ ! ସାଥିରେ ଆଉ କେତେ ପରିବାରଙ୍କୁ ନେଇ ।

ସତକହିଲେ ଆଉ ଚୁନାର୍‌ରେ ଥିଲା ବି କ'ଣ ? ଯେତେବେଳେ ପାକିସ୍ଥାନ ସୃଷ୍ଟିହୁଏ ମଣିଷ ଅଧା ହୋଇ ରହିଯାଏ । ଫସଲ ଉଜୁଡ଼ିଯାଏ, ଗଳିସବୁ ରୁନ୍ଧି ଯାଆନ୍ତି ଓ ଆକାଶ ବି ଫାଟିପଡ଼େ । ମେଘମାନେ ଶୁଷ୍କ ହୋଇଯାଆନ୍ତି ଓ ପବନ ପ୍ରବାହିତ

ହୋଇପାରେନା । ସେମାନେ ସମସ୍ତେ ବନ୍ଦୀହୋଇ ଯାଆନ୍ତି କେବଳ ।

ଜେଜେଙ୍କ ଚିଠିରୁ ଜାଣିଲି କିଛିବର୍ଷ ପରେ, କେତେଜଣ ତନ୍ତୀ, ବଢ଼େଇ ପରିବାରଙ୍କୁ ସାଥୀରେ ନେ ସେମାନେ ଫସଲ, ଗଳି, ଆକାଶ, ମେଘ ଏବଂ ପବନର ସନ୍ଧାନରେ ବାହାରି ପଡ଼ିଥିଲେ । ଏବଂ ଭିଓ୍ୱଣ୍ଡି ଆସି ଯାଇଥିଲେ । ମୁଁ ଜାଣିନଥିଲି ବନ୍ନୋର ପରିବାର ଏମାନଙ୍କ ସହ ଆସିଲେ କି ନାହିଁ । ଡ୍ରିଲ ମାଷ୍ଟର ସେଠାକୁ ଆସି ବା କରିଥାନ୍ତେ କ'ଣ ? ଏ କଥା ମୁଁ ଭାବୁଥିଲି । ଜେଜେବାପାଙ୍କର ଆସିବାର ଥିଲା ସେ ସୂତାଲୁଗା ବେପାର କରୁଥିଲେ । ଆଠଘର ମୁସଲମାନ ତନ୍ତୀ, ଦି'ଘର ହିନ୍ଦୁ ବଢ଼େଇଙ୍କୁ ସାଥିରେ ନେଇ ସେ ଭିଓ୍ୱଣ୍ଡି ଆସିଥିଲେ । ପ୍ରଥମେ ପ୍ରଥମେ ସେମାନଙ୍କୁ କ'ଣ ଅସୁବିଧା ହେଉଥିଲା ଜଣାନାହିଁ ।

ବନ୍ନୋ, ତୁମ ବିଷୟରେ ମୁଁ ଜାଣିଲି, ସେତେବେଳେ ମୋ ଜେଜେ ଥରେ ମୋତେ ପୁନା ଦେଖାକରିବାକୁ ଆସିଥିଲେ । ସେହି ସମୟରେ ସେ ଖୁବ୍ ମାମୁଲି ଢଙ୍ଗରେ କହିଥିଲେ ଯେ, ଡ୍ରିଲ ମାଷ୍ଟରଙ୍କ ଘର ଏଠାକୁ ଆସିଛନ୍ତି । ତାଙ୍କୁ ଭିଓ୍ୱଣ୍ଡି ସ୍କୁଲରେ ଚାକିରି ମିଳିଯାଇଛି ଆଉ ବନ୍ନୋର ବିବାହ ମଧ ହୋଇଯାଇଛି । ଜ୍ୱାଇଁ ସେମାନଙ୍କ ସହ ସେଇ ମହଲାରେ ରହୁଛି, ତନ୍ତ ଚଳାଉଛି । ସେ ରେଶମର ଖୁବ୍ ସୁନ୍ଦର କାରିଗର । ଜେଜେ ମୋତେ ଯେଉଁ ଢଙ୍ଗରେ ଏକଥା ବଖାଣିଲେ, ଲାଗୁଥିଲା ସେ ସବୁ ବୁଝିସୁଝି ଏହାକୁ ହାଲ୍‌କା ଢଙ୍ଗରେ କହୁଛନ୍ତି ।

କିନ୍ତୁ ମୋତେ ମୋଟେ ଜଣାନଥିଲା ଯେ, ଓ୍ୱାକେ ମହଲାରେ ଜେଜେଙ୍କର ଓ ତୁମର ଘର ଗୋଟିଏ ହିଁ ଥିଲା । ଉପର ମହଲାରେ ଜେଜେଙ୍କର ଓ ତଳେ ତୁମ ଘର । ଅନ୍ୟ ଲୋକମାନେ ବଙ୍ଗାଲପୁରା ଓ ନୂଆ ବସ୍ତିରେ ରହୁଛନ୍ତି । ପ୍ରାୟ ମାଷ୍ଟରବାବୁ ପୂର୍ବର ପ୍ରାୟଶ୍ଚିତକୁ ଭୁଲିଯିବା ପାଇଁ ଏମିତି ହିଁ କରିଛନ୍ତି । ବହୁତ ଇଚ୍ଛା ହେଉଥିଲା ଦଉଡ଼ିଯାଇ ତୁମକୁ ଦେଖି ଆସିବାକୁ । କିନ୍ତୁ ପ୍ରକୃତରେ କଥା ହେଉଛି ମୋ ମନ ଭାଙ୍ଗି ଯାଇଥିଲା । ଆଉ ମୁଁ ଆହୁରି ନିରାଶ ହୋଇଯାଇଥିଲି । ଏକଥା ଶୁଣି ଯେ ତୁମେ ଏଇଠି ଅଛ ଓ ବିବାହିତା ପୁଣି ଜେଜେ ଗୁରେଇବଙ୍କେଇ କହିଦେଇଥିଲେ ଯେ ମୁଁ ଯଦି ଭିଓ୍ୱଣ୍ଡି ନ ଆସେ, ତେବେ ଭଲ ହେବ... କାରଣ ସେ ମାଷ୍ଟରବାବୁଙ୍କ କଥା ହିଁ ଚିନ୍ତା କରୁଥିଲେ । ସେ ଜାଣିଥିଲେ ଯେ ମାଷ୍ଟରବାବୁଙ୍କର କୌଣସି ଭୁଲ୍ ନଥିଲା ଏବଂ ମୋ ଉପସ୍ଥିତି ମାଷ୍ଟରବାବୁଙ୍କୁ ଦୁଃଖୀ କିମ୍ୱା ନିରାଶ ନକରୁ । ଏହା ଏକ ଅଜବ ପରିସ୍ଥିତି ଥିଲା- କ'ଣ ଏହା ସମ୍ଭବ ନଥିଲା ଯେ ସେ ଘର ସେମିତି ଥାଆନ୍ତା ଓ ମୋତେ ରହିବାକୁ ସେଠି ଜାଗା ମିଳିଥାଆନ୍ତା । ତୁମେ ଆଉ ମୁଁ କେବେ ଏକ ହୋଇନଥାନ୍ତେ, କେବଳ ସେଥିରେ ଥାଆନ୍ତେ ! ମନରେ ବିଭିନ୍ନ ପ୍ରକାର ଚିନ୍ତା ଆସୁଥିଲା- ଅବଦମିତ କ୍ରୋଧ ଯଦି ପ୍ରକାଶିତ ହୋଇଯାଏ, ତେବେ ? ଯଦି ମୋ ମଧ୍ୟରେ ପ୍ରଜ୍ୱଳିତ ପାକିସ୍ଥାନ ବାହାରିଆସେ, ତେବେ ? ମୁଁ ଯଦି

ତୁମ ସ୍ୱାମୀ ସଙ୍ଗେ ତୁମକୁ ଶୋଇବାକୁ ନଦିଏଁ ତେବେ ? ଯଦି ଭିଓ୍ୱଣ୍ଡିରୁ ମୁଁ ତାକୁ ସେଇମିତି ବାହାର କରିଦିଏଁ ଯେମିତି ମୋତେ ଚୁନାର୍‌ରୁ ନିକାଲି ଦିଆଯାଇଥିଲା ! କୌଣସି ଏକ ରାତିକୁ ବର୍ଦ୍ଦାସ୍ତ କରି ନପାରି ତୁମ ସ୍ୱାମୀଙ୍କ ସହ ଥିଲାବେଳେ ଯଦି ମୁଁ ସେ ଘରକୁ ପଶିଯାଏ, ତେବେ ?

ମୁଁ ଠିକ୍ ଜାଣିଛି, ଜେଜେ ଓ ମାଷ୍ଟରବାବୁ ଦୁହେଁ ଦୁହିଁଙ୍କୁ ନିରୀହ ପଣର ଭରସା ଦେଇ ଚାଲିଥିଲେ । କିନ୍ତୁ ମୋ ପାଖରେ ଭରସା ଥିଲା ? ସେମାନଙ୍କର କ'ଣ ବିଗିଡ଼ି ଯାଇଥିଲା ? ବିଗିଡ଼ି ଯାଇଥିଲା କେବଳ ମୋର ? ମୁଁ ସେଇଠାରୁ ମୁହଁରେ କେବଳ ପର୍ଦ୍ଦାଟିଏ ଲଗେଇ ଚାଲିଥିଲି, ହାତରେ ହାତକଡ଼ି ପିନ୍ଧି ଓ ପେଟରେ ଛୁରୀଟିଏ ଭୁଷିନେଇ । କିନ୍ତୁ ବନ୍ନୋ ଭିଓ୍ୱଣ୍ଡିରେ ମଧ ଦଙ୍ଗା ହେଲା । ତୁମ କିମ୍ବା ମୋ ପାଇଁ ନୁହଁ, ସେଇ ବୁଝାମଣାର ଅଭାବ ହେତୁ । ଶୁଣିଲା ପରେ ମୁଁ ସ୍ତମ୍ଭୀଭୂତ ହେଲି । ଜାଣେନା ଏବେ ସେଠି କ'ଣ ଘଟିଯାଇଥିବ ? ପାଞ୍ଚବର୍ଷ ପୂର୍ବେ ଦଙ୍ଗାର କାରଣ ମୁଁ ହିଁ ହୋଇଥିଲି, କିନ୍ତୁ ଏବେ ଏହାର କାରଣ ମୁଁ ନଥିଲି । ମୁଁ ସେଠାକୁ ଯାଇ ନଥିଲି, କାରଣ ତୁମକୁ ଦେଖିଲା ମାତ୍ରେ ମୁଁ ଦଙ୍ଗା ହଙ୍ଗାମା ଆରମ୍ଭ କରିଦେଇଥାଆନ୍ତି । କିନ୍ତୁ ତୁମେ ମୋତେ ଶେଷରେ ଏ ଅବସ୍ଥାରେ ଦେଖାଦେଲ ବନ୍ନୋ !

# କିଏ ସେ ତୁମେ ?

ଝଡ଼ ବର୍ଷାର ରାତି । ପ୍ରଥମେ ବର୍ଷା, ପୁଣି ବରଫ ବର୍ଷା ଆଉ କୁହୁଡ଼ିର ଘନ ଆସ୍ତରଣ । ଝଲକା ଝଲକା ଥଣ୍ଡା ପବନ ଯଦି ବହୁ ନଥାଆନ୍ତା ତେବେ ହୁଏତ ଏତେ ହଇରାଣ ହେବାକୁ ପଡ଼ିନଥାଆନ୍ତା । କିନ୍ତୁ ପବନ ଓ ପବନ ଭିତରେ ବି ତଫାତ୍ ଅଛି । ଏହା ଥିଲା ଝଡ଼ର ପବନ ଆଉ ତୀରର ତୀବ୍ରତା ନେଇ ବହି ଚାଲିଥିଲା ପ୍ରଚଣ୍ଡ ଗତିରେ । ସେ ନିଜେ ଗାଡ଼ି ଡ୍ରାଇଭ୍ କରୁଥିଲା । ତା' ଗାଡ଼ିର ବ୍ଲୋଅର୍ ଖରାପ ଥିଲା, ନଚେତ୍ ଗାଡ଼ି ହୁଏତ କିଛି ମାତ୍ରାରେ ଗରମ ହେଇପାରିଥାଆନ୍ତା । ଦୂରତ୍ୱ ଦୃଷ୍ଟିରୁ ସେ ସନ୍ଧ୍ୟା ଚାରିଟା ସୁଦ୍ଧା ଜେନେଭାରେ ପହଞ୍ଚିଯାଇଥାଆନ୍ତା । ଆଉ 'କମ୍ୟୁନ୍' ଖୋଜିବା ପାଇଁ ତାକୁ ଅଧଘଣ୍ଟେ ଲାଗିଥାଆନ୍ତା ଏବଂ ଖୁବ୍ ବଢ଼ିଆ 'କମ୍ୟୁନ୍'ରେ ବସି ବନ୍ଧୁମାନଙ୍କ ସହ ଚାହା ପିଉଥାଆନ୍ତା ।

କିନ୍ତୁ ଏଇ ବରଫ ଝଡ଼ ହିଁ ତାକୁ ଅସୁବିଧାରେ ପକେଇ ଦେଇଚି । ବନ୍ଧୁମାନେ ରାସ୍ତା ଖୁବ୍ ସୁନ୍ଦର ବୋଲି ତାକୁ କହିଥିଲେ । ତାହା ଥିଲା ବି ସତ, କିନ୍ତୁ ଏଇ ଅଦିନିଆ ଝଡ଼ ସବୁକିଛି ବରବାଦ୍ କରିଦେଇଥିଲା । ଜେନେଭା ଆଡ଼କୁ ଲମ୍ବି ଯାଇଥିବା ସଡ଼କ ଥିଲା ଖୁବ୍ ଆନନ୍ଦଦାୟକ । ଏମିତି ବି ୟୁରୋପର ସମସ୍ତ ସଡ଼କ ସବୁ ଖୁବ୍ ଚମତ୍କାର, କିନ୍ତୁ ଝଡ଼ କ'ଣ କାହା କଣ୍ଟ୍ରୋଲରେ ଅଛି ! ଫଗ୍ ଲାଇଟ୍ ନଥିଲେ କ'ଣ ଗାଡ଼ି ଚଲେଇ ହେଉଥାଆନ୍ତା ! ଦିନରେ ବି ଲାଗୁଥିଲା ଯେମିତି ଘନ ଅନ୍ଧାର ମାଡ଼ି ଆସୁଛି ! ତାକୁ ଜଣାପଡୁଥିଲା ଯେମିତି ଏଭଳି ତୋଫାନ୍ ଭିତରେ ଜେନେଭା ପହଞ୍ଚିବା ଏତେ ସହଜ ନୁହଁ, ତେଣୁ ଡ୍ରାଇଭ୍ କରିବା ଭିତରେ ସେ ଗୋଟେ 'ମୋଟେଲ୍' ଖୋଜିବାରେ ବି ଲାଗିଥିଲା । ସେଠାରେ ପେଟ୍ରୋଲ ବି ତା'ର ପକେଇବାର ଥିଲା ।

ଶେଷରେ ଗୋଟେ ମୋଟେଲ୍ ଦେଖାଗଲା । ହଁ, ଗୋଟେ ମୋଟେଲ । ସେ ଗାଡ଼ି ରଖିଲା । ଗ୍ୟାସ୍ ପମ୍ପ ନିକଟରେ ଆଲୁଅ ଜଳୁଥିଲା । ସେ କେତେଥର ହର୍ଣ୍ଣ ବଜେଇଲା । ବହୁତ ସମୟ ପରେ ଜଣେ ଲୋକ ବାହାରକୁ ଆସିଲେ ।

ସେ ତାକୁ ଚାବି ବଢ଼େଇ ଦେଇ କହିଲା- କୋଡ଼ିଏ ଲିଟର୍ ପେଟ୍ରୋଲ ।

ଗ୍ୟାସ୍ !

ହଁ !

ଆଜି ରାତିକ ପାଇଁ ଏ ମୋଟେଲ୍‌ରେ ରହିବାକୁ ଘର ମିଳିବ ।

ହଁ, ଟୋକି ବି ମିଳିବେ ।

ନାରୀର ଆବଶ୍ୟକତା ନାହିଁ ।

ତୁମ କ'ଣ ସେମାନଙ୍କ ପାଇଁ ଆବଶ୍ୟକ ନୁହଁ !

ଏ ଉତ୍ତରରେ ସେ ଅପମାନିତ ଅନୁଭବ କରିଥିଲା । କିନ୍ତୁ କ'ଣ ବା କରିପାରିଥାଆନ୍ତା । ଆଉ ! ନିଜର ବିବଶତା ଏବଂ ବାଧ୍ୟବାଧକତା ହେତୁ ଏ ସମସ୍ତ ଅପମାନକୁ ସହିନେଇ ପୁଣି ପଚାରିଲା- ପରବର୍ତ୍ତୀ ମୋଟେଲ କେତେ କି.ମ. ପରେ ପଡ଼ିବ ?

ହଁ ପ୍ରାୟ ସତୁରୀ କି.ମି. ପରେ... କିନ୍ତୁ ସେଠି ବ ଏଇ ସ୍ତ୍ରୀଲୋକ ପ୍ରସଙ୍ଗ ଉଠିବ... ଏଇ ଶୀତଳ ଝଡ଼ରାତିରେ ତୁମେ ନାରୀମାନଙ୍କୁ ଆଡ଼େଇ ଦେବାକୁ ଚାହୁଁଚ କାହିଁକି ?

ସେ ଚୁପ୍ ରହଲା । ପେମେଣ୍ଟ କଲା ଓ ଗାଡ଼ି ଷ୍ଟାର୍ଟକରି ଚାଲିଲା ଆଗକୁ ଆଗକୁ । ତା' ଜୋତା ଓ ମୋଜା ପୂରାପୂରି ଭିଜିଯାଇଥିଲା । ଗୋଡ଼ ଥଣ୍ଡାହେଇ ଆସୁଥିଲା । ଝଡ଼ ଜୋର୍‌ରେ ବହି ଚାଲିଥିଲା, ଆଉ ବନ୍ଦ ହେବାର ଆଭାସ କିଛି ନଥିଲା । ଥଣ୍ଡା ଧୀରେ ଧୀରେ ବଢ଼ି ଚାଲିଥିଲା ଓ ଜେନେଭା ଥିଲା ଆହୁରି ଦେଢ଼ଶହ କିଲୋମିଟର । ଜେନେଭାରେ ପହଞ୍ଚି ପୁଣି ତାକୁ 'କମ୍ୟୁନ୍' ଖୋଜିବାକୁ ହେବ ଯେଉଁଠି ସେ ରହିବ ରାତିରେ । ଖୁବ୍ ଚିନ୍ତାଗ୍ରସ୍ତତା ଭିତରେ ଆଗକୁ ବଢ଼ିବା ଛଡ଼ା ଆଉ ଚାରା କଛି ନଥିଲା । ବିନା ଟ୍ରାଫିକ୍‌ରେ ରାସ୍ତା ସବୁ ଖାଁ

ଖାଁ ଲାଗୁଥିଲା । ଘରୁ ବାହାରିବା ଆଗରୁ ପାଣିପାଗ ସମ୍ବନ୍ଧୀୟ ବୁଲେଟିନ୍ ନ ଶୁଣିବା ଥିଲା ତା'ର ଏକ ମସ୍ତବଡ଼ ଭୁଲ୍... ସେଇଥିପାଇଁ ଏ ଘୋର ଝଡ଼ବର୍ଷାରେ ହୁଏତ ସେ ଫସିଯାଇଥିଲା...

ସତୁରୀ କିଲୋମିଟର ପରେ କୌଣସି ମୋଟେଲର ଦର୍ଶନ ନଥିଲା । ତା'ର ଧୈର୍ଯ୍ୟଚ୍ୟୁତି ଘଟିଥିଲା । ଶେଷରେ ସେ ପାର୍କିଂଲେନ୍‌ରେ ଗାଡ଼ି ଛିଡ଼ା କରେଇ ଟିକିଏ ଥକ୍କା ନେବାରେ ଲାଗିଲା । ଆଉ ତା'ପାଇଁ ସାନ୍ତ୍ୱନାର କଥା ଥିଲା ଯେ ସେଇଠି ବି ଯୋଡ଼େ ନିଗ୍ରୋ ଗାଡ଼ି ଛିଡ଼ା କରେଇଥିଲେ ।

ସଡ଼କର ଦି'ପଟେ ଜଙ୍ଗଲ । ଝଡ଼ ତୋଫାନ୍‌ରେ ଯେମିତି ଗଛସବୁ ପବନ ସହ କଥା ହେଉଥିଲେ... ଗଛମାନଙ୍କର ଫଡ଼୍‌ଫଡ଼୍ ହେଇ ପିଟି ହେବାର ଶବ୍ଦ ଆଉ ବରଫରେ ଭିଜି ଭିଜି ଯିବାର ଫେଣ୍ଟାଫେଣ୍ଟି ବାସ୍ନା ବି ବହି ଚାଲିଥିଲା । ବଣଫୁଲର ବାସ୍ନା ତ ତାକୁ ଖୁବ୍ ଭଲଲାଗିଲା । କିନ୍ତୁ ଜୋର୍‌ରେ ବହୁଥିବା ପବନକୁ ସାମ୍ନା କରିବା ଥିଲା ଭାରି କଷ୍ଟ । ସେ ନିଗ୍ରୋ ହଳକ ଜାଣିପାରିଥିଲେ ଯେ କୌଣସି ଗାଡ଼ି ଆସି ପାଖରେ ଅଟକିଛି । ସେ ଦୁଇଜଣ ଗାଡ଼ି କ୍ରସ ହେଇ ଆଗକୁ ଯବାର ଦେଖିଥିଲେ ଆଉ କୁଙ୍କୁରିକାଙ୍କୁରି ହେଇ ଗାଡ଼ି ଭିତରେ ଚୁପ୍‌ଚାପ୍ ବସିଥିଲେ ।

ତା'ପରେ ସାଇରନ୍ ବଜେଇ ଟ୍ରାଫିକ୍ ପୋଲିସର ଗାଡ଼ି ଆସି ତା' ଗାଡ଼ି ଓ ନିଗ୍ରୋ ଯୋଡ଼ିଙ୍କର ଗାଡ଼ି ମଝିରେ ଅଟକିଗଲା । ସେମାନେ ଗେଷ୍ଟାପୋ (ନାଜି ପୋଲିସ)ଙ୍କ ଭଳି ଉଜ୍ଜ୍ୱଳ ଆଲୁଅ ପକେଇ ଏ ତିନିଜଣଙ୍କୁ ଦେଖିଲେ ଏବଂ ଉପର ଦୁଆରର କାଚ ସାମାନ୍ୟ ଖୋଲିଦେଇ ସେଥିରେ ବସିଥିବା ଜଣେ ପୋଲିସ କହିଲା- 'ଗୋ' 'ଗୋ' । କିନ୍ତୁ ଏଇ ଝଡ଼ବର୍ଷାରେ- ହାଓ ଗୋ ? ହାଓ ? ନିଗ୍ରୋ ଚିତ୍କାର କଲା । ନୋ ଷ୍ଟେ... ଗୋ... ଟ୍ରାଫିକ୍ ପୋଲିସ ଆହୁରି ଜୋର୍‌ରେ ପାଟିକରି କହିଲା ।

ଓକେ...ଓକେ... ପାଞ୍ଚ ମିନିଟ୍ ପରେ ନିଗ୍ରୋ ଶାନ୍ତ ହେଲା । ଟ୍ରାଫିକ୍ ପୋଲିସ ଗାଡ଼ି ପାଞ୍ଚ ମିନିଟ୍‌ର ସମୟସୀମା ଦେଇ ଚାଲି ଯାଇଥିଲା । ସେଇ ନିଗ୍ରୋ ତା' ଗାଡ଼ିକୁ ମୋ ଗାଡ଼ି ପାଖରେ ଲଗେଇଦେଇ ପଚାରିଥିଲା- କେଉଁଠିକୁ ? ଜେନେଭା ! ଏଣ୍ଡ୍ ୟୁ !

'ଲୁଜାନ୍... ଦିଜ୍ ବାଷ୍ଟାର୍ଡ୍‌ସ୍... ଏମାନେ ତୁମ ନକଟରୁ ପଇସାତ ଶୋଷି ନିଅନ୍ତି, କିନ୍ତୁ ନିଜ ଦେଶରେ ରଖେଇ ଦିଅନ୍ତିନି ! ସେଇ ନିଗ୍ରୋଟି ଇଂରାଜୀରେ ବି କହିଥିଲା- ଘୃଣା ଏବଂ କଲ୍‌ଚର୍‌ର ସମସ୍ତ କଥା କହି କହି ଏମାନେ ଆମକୁ ଓ ତୁମକୁ ବରଦାସ୍ତ କରିପାରନ୍ତିନି- ତୁମେ ଏସିଆର ଲୋକ- ପ୍ରାୟ ଇଣ୍ଡିଆନ କିମ୍ବା ପାକିସ୍ତାନୀ...

ଇଣ୍ଡିଆନ୍ !

ଆମେ ଆମେରିକାନ୍ ! କିନ୍ତୁ ଏମାନେ ଆମକୁ ଆମେରିକାନ୍ ରୂପେ ସ୍ୱୀକାର କରନ୍ତିନି । ଏ ହାରାମଜାଦାମାନେ ଆମ୍ଭକୁ ଓଠ ଚାପି ନିଗର୍ସ ବୋଲି କହନ୍ତି ଓ ନିଗ୍ରୋ

ରୂପରେ ଦେଖନ୍ତି । ମୋତେ ପଚାରୁଥିଲେ, ଏ ଟୋକିକୁ କେଉଁଠୁ ଆଣିଛ ? କିନ୍ତୁ ଏ ତ ମୋ ସ୍ତ୍ରୀ । ଏଇ ହାରାମଜାଦାମାନେ ଟୋକି ଆଉ ସ୍ତ୍ରୀ ଭିତରେ ପାର୍ଥକ୍ୟ କ'ଣ, କିଛି ବୁଝନ୍ତିନି... ସ୍ତ୍ରୀ ଲୋକମାନଙ୍କୁ ବି ସମ୍ମାନଦେବା ଜାଣନ୍ତିନି । କେବଳ ଟଙ୍କା ପଇସା ଥିବା ସ୍ତ୍ରୀ ଲୋକ ଓ ଆର୍ମିରେ ଥିବା ନାରୀମାନଙ୍କୁ ସମ୍ମାନ ଦେଖାନ୍ତି... ଖୁବ୍ ଭଲ ଯେ ଏମାନେ ଇଂରାଜୀ ଜାଣନ୍ତିନି- ସେ କହିବା ସଙ୍ଗେ ସଙ୍ଗେ ବହୁତ ଜୋର୍‌ରେ ନିଜ ଗାଡ଼ି ସଡ଼କ ଉପରକୁ ନେଇ ସେଇ ଘନ କୁହୁଡ଼ି ଓ ଝଡ଼ବର୍ଷାରେ ଉଭେଇ ଯାଇଥିଲା ।

ସେ କିନ୍ତୁ ସାହସ ବାନ୍ଧି ନେଇଥିଲା । ବରଫ, କୁହୁଡ଼ି ଏବଂ ଥଣ୍ଡା ଏ ସମସ୍ତ ମିଶି ଯେମିତି ତାକୁ ନାଚାର୍ କରିଦେଇଥିଲେ । ସେ ସେଇ ନିଗ୍ରୋ ଯୋଡ଼ିଙ୍କ ପଛେ ପଛେ ଆଗକୁ ମାଡ଼ିଯିବାକୁ ଚାହୁଁଥିଲା । କିନ୍ତୁ ଅସହଯୋଗ କରିଥିଲା ଗାଡ଼ିର ଇଞ୍ଜିନ୍ । ଏହା ଷ୍ଟାର୍ଟ ହେଉନଥିଲା... କେବଳ କାଚ ଲଗେଇ ବସିରହିବା ବ୍ୟତୀତ ଆଉ କୌଣସି ଚାରା ନଥିଲା... ଏଠାରେ ଏକା ପ୍ରକାରର ଅସୁବିଧାରେ ପଡ଼ିଯାଇଥିବା ମଣିଷମାନଙ୍କର ଚିହ୍ନା ପରିଚୟର କୌଣସି ଅର୍ଥ ବି ନଥିଲା... ସେଇ ନିଗ୍ରୋ ହଳକ ବି ସେଇଭଳି ଏକ ଦ୍ୱନ୍ଦ୍ୱଗ୍ରସ୍ତତା ଭିତର ଦେଇ ଗତି କରୁଥିଲେ, ଯେଉଁଥିରେ ସେମାନେ ନିଜେ ହିଁ ଫସି ଯାଇଥିଲେ । କିନ୍ତୁ ସେମାନେ ଥିଲେ ଆମେରିକାନ୍, ତେଣୁ ସମସ୍ତ ମାନ ଅପମାନ ସହିନେଇ ବି ସେ ସବୁ ଭିତରୁ ମୁକୁଳି ଆସିଥିଲେ । ସେ ଅନୁଭବ କରିଥିଲା ଦେଶ ଦୃଷ୍ଟିରୁ ବି ଅପମାନର ଜ୍ୱାଳା ଓ ଅପମାନ ସହିନେବାର ଶକ୍ତିର ଅନୁପାତ ମଧ୍ୟ ଥିଲା ବେଶ୍ ଭିନ୍ନ । ସେ ଆମେରିକାନ୍ ନିଗ୍ରୋକୁ ବି ଗାଳି ଦେଇପାରିଥାଆନ୍ତା । ସେ ନିଜକୁ ଖୁବ୍ ମାନ୍ଧାତା ଅମଳର ବୋଲି ଭାବି ନେଉଥିଲା... ତା ମନ ଭିତରେ ଉଠୁଥିବା ଏ ସମସ୍ତ ଭାବନାର ଝଡ଼ ନିଶ୍ଚିତ ରୂପେ ବହିଚାଲିଥିବା ଝଡ଼ ଅପେକ୍ଷା ଥିଲା ଖୁବ୍ ବେଦନାଦାୟକ ! ଆଉ ତା'ର ପ୍ୟାରିସ୍‌ର ସୋବର୍ଣ୍ଣ ଇଲାକାରେ ଥିବା ସେଇ ରେଷ୍ଟୁରାଣ୍ଟ କଥା ମନେପଡ଼ିଥିଲା, ଯାହାକୁ ଇଣ୍ଡିଆନ୍ ରେଷ୍ଟୁରାଣ୍ଟ ବୋଲି ଶୁଣି ନିଜ ଲୋକମାନଙ୍କୁ ଭେଟି ନିଜର ପରିଚୟ ସୃଷ୍ଟି କରିବାକୁ ସେଠାକୁ ଦଉଡ଼ି ଯାଇଥିଲା । 'ରେଷ୍ଟୁରାଣ୍ଟେ ଇଣ୍ଡିୟାନ୍'ର ସମସ୍ତ କର୍ମଚାରୀ ଥିଲେ ଭାରତୀୟ ଏବଂ ମ୍ୟୁଜିକ୍ ସିଷ୍ଟମ୍‌ରେ ରବିଶଙ୍କରଙ୍କର ସୀତାର୍ ବାଜି ଚାଲିଥିଲା । ସେ ଟିକିଏ ଶାନ୍ତିରେ ନିଃଶ୍ୱାସ ନେଲା । ମାଛ ତରକାରୀ ସହ ଭାତ ଖାଇଲା । କିନ୍ତୁ ହୋଟେଲରେ ଖାଦ୍ୟ ପରଷୁଥିବା ଏକ କର୍ମଚାରୀଙ୍କ ସହ ସେ ଯେତେବେଳେ ହିନ୍ଦୀରେ କଥାହେବାକୁ ଚାହିଁଲା ଜଣାପଡ଼ିଲା ଯେ ସେ ଭାରତୀୟ, କିନ୍ତୁ ପଣ୍ଡିଚେରୀର ହେଇଥିବାରୁ ଫ୍ରେଞ୍ଚ୍ ଭାଷାରେ କଥାବାର୍ତ୍ତା କରନ୍ତି... ସେ କିଛିଟା ଆଘାତ ପାଇଲେ ବି ଚୁପ୍ ରହିଥିଲା । ସେ ରେଷ୍ଟୁରାଣ୍ଟର ମ୍ୟାନେଜରଙ୍କୁ ଭେଟିବାକୁ ଇଚ୍ଛା କରିଥିଲେ ବି ମ୍ୟାନେଜର୍ ତାକୁ ନ ଭେଟି ପଳାଇ ଯାଇଥିଲେ...

କିନ୍ତୁ କାହିଁକି ? ସେ କାହିଁକି ଜଣେ ଭାରତୀୟଙ୍କୁ ଭେଟିବାକୁ ଚାହୁଁନଥିଲେ ? ସେ ସମୟରେ ଜଣେ କର୍ମଚାରୀ ଖୁବ୍ ଶାଳୀନତାର ସହ କହିଥିଲେ- ଯେ ମହାଶୟ ! ଆମେମାନେ

ପାକିସ୍ଥାନୀ... କିନ୍ତୁ ଆମ ପାଖରେ ପାକିସ୍ଥାନୀ ମ୍ୟୁଜିକ୍ କିମ୍ବା ପାକିସ୍ଥାନୀ ଫୁଡ୍ ରୂପରେ ପରଷିଦେବା ପାଇଁ କିଛି ହିଁ ନାହିଁ । ସେଥିପାଇଁ ଆମେ ହିନ୍ଦୁସ୍ଥାନୀ ମ୍ୟୁଜିକ୍ ଏବଂ ଫୁଡ୍ ନାଁରେ ଆମ ବେପାର ଚଳାଇଛୁ ଏବଂ ନିଜର ଗୁଜୁରାଣ ମେଣ୍ଟଉଛୁଁ... ଏଇ ବିବଶତାକୁ ଲୁଚେଇବା ପାଇଁ ମ୍ୟାନେଜରବାବୁ ଆପଣଙ୍କୁ ଦେଖା ନକରି ଚାଲିଗଲେ ।

ସେ ସେହି ସମୟରେ ମଣିଷର ସେଇ ସାଂସ୍କୃତିକ ସଂକଟର ମୂଳ ଉତ୍ସ ବିଷୟରେ ଚିନ୍ତା କରିଥିଲା । ଆଉ ସେ ନିଜେ ବି ବିଭିନ୍ନ ସ୍ଥାନରେ ଏହାର ଶିକାର ଥିଲା । ଆଉ ତାକୁ ଲାଗୁଥିଲା ଆଗକୁ ବି ହୁଏତ ତାକୁ ଏଇ ପରିସ୍ଥିତିର ସାମ୍ନା କରିବାକୁ ହେବ... ଏବଂ ତାକୁ ଏଇ ପରିସ୍ଥିତି ଦେଇ ଗତି କରିବାକୁ ହେବ.... ଆତ୍ମ ପରିଚୟ ଓ ମାନବୀୟ ସମ୍ମାନର ସନ୍ଧାନ ନିମନ୍ତେ... !

ପୁଣିଥରେ ସେ ଗାଡ଼ି ଷ୍ଟାର୍ଟ କରିବାରୁ ଇଞ୍ଜିନ୍ ଚାଲୁହେଲା । ତାହାବି ଆଶ୍ଚର୍ଯ୍ୟର କଥା ! କାରଣ ଏତେ ଥଣ୍ଡା ଭିତରେ ଥିବା ଗାଡ଼ିର ଇଞ୍ଜିନ୍ କ'ଣ ଏତେ ଜଲ୍‌ଦି ଷ୍ଟାର୍ଟ ହେଇଥାଆନ୍ତା ! ଏବେବି ଝଡ଼ ବହି ଚାଲିଥିଲା ସେଇମିତି । ଆଉ ସେ କୌଣସିମତେ ଗୋଟେ ମୋଟେଲ୍ ପାଖକୁ ଆସି ଯାଇଥିଲା ।

ଗ୍ୟାସ୍... କେତେ ଦରକାର ? ପେଟ୍ରୋଲ୍ ପମ୍ପର ଜଣେ କର୍ମଚାରୀ ପଚାରିଥିଲା । ନାଁ, ମୋଟେଲ୍‌ରେ ରହିବା ପାଇଁ ରୁମ୍‌ଟିଏ ମିଳିପାରିବ ?

ପଚାରେ ! କହି ସେହି ଭଲ ଲୋକ ଜଣକ ଭିତରକୁ ଗଲା ଏବଂ ଗୋଟେ ମିନିଟ୍ ପରେ ଫୋନ୍‌ରେ କଥାହେଇ ଏକ ଖୁସି ଖବର ହେଲା- ୟେସ୍... ରୁମ୍ ଫର୍ ୟୁ... ରୁମ୍ ଫାଙ୍କା ଅଛି, ଆପଣଙ୍କୁ ମିଳିଯିବ... ଗୋ...

ସେ ମୋଟେଲ୍‌ର ରିସେପ୍‌ସନ୍ ନିକଟରେ ପହଞ୍ଚିଲା । ଥଣ୍ଡା ଝଡ଼ ଭିତରୁ ମୋଟେଲ୍ ଭିତରକୁ ପ୍ରବେଶ କରିବା ମାତ୍ରେ ଗରମ ପବନର ସଂସ୍ପର୍ଶରେ ଆସିବାରୁ ଭଲ ଲାଗିଲା ପାସ୍‌ପୋର୍ଟ ! ପ୍ରାୟ ତାକୁ ନ ଦେଖିଲା ଭଳି ମୁଡ୍‌ରେ ରିସେପ୍‌ସନିଷ୍ଟ କହିଲା । ସେ ପାସପୋର୍ଟ ଦେଖାଇ ଟିକିଏ ପ୍ରକୃତିସ୍ଥ ହେଲାବେଳକୁ ରିସେପ୍‌ସନିଷ୍ଟ କହିଲା ''ସରି, ନୋ ରୁମ୍ ।''

'କିନ୍ତୁ, ଏବେ ତ ଆପଣ ପେଟ୍ରୋଲ ପମ୍ପର କର୍ମଚାରୀକୁ...

'ନୋ ଆର୍ଗୁମେଣ୍ଟ... ନୋ ରୁମ୍...

ମୁଁ ଜାଣିଚି- ବହୁତ ରୁମ୍ ଖାଲି ପଡ଼ିଚି !

ସରି, ନୋ ଆର୍ଗୁମେଣ୍ଟ... ନୋ ରୁମ୍...

ମୁଁ ଜାଣିଚି- ବହୁତ ରୁମ୍ ଖାଲି ପଡ଼ିଚି ।

ସରି, ନୋ ଆର୍ଗୁମେଣ୍ଟ... ନୋ ରୁମ୍...

କ'ଣ ଏହା ବର୍ଣ୍ଣ ବୈଷମ୍ୟ... ସେ ଚିତ୍କାର କରି କହିଲା ।

ଡୋଣ୍ଟ ସାଉଟ୍... ନୋ ରୁମ୍ ।

ସେ ଖୁବ୍ ଅପମାନିତ ହେଇ ବାହାରକୁ ବାହାରି ଆସିଥିଲା । ବାହାରେ ଶୀତଳ ପବନର ତୀର ଯେମିତି ତା' ଦେହରେ ପଶିଯାଉଥିଲା... ଜୋତା ଓ ମୋଜା ଖୁବ୍ ଭିଜି ଯାଇଥିଲା । ସେ ପିନ୍ଧିଥିବା ଓଭର୍‌କୋଟ୍‌ର ପର୍ଯ୍ୟାପ୍ତ ଅଂଶ ବି ଓଦା । ରକ୍ତ ଚାଉଳ ଚୋବେଇ ଚୋବେଇ ସେ ନିଜ ଗାଡ଼ି ପର୍ଯ୍ୟନ୍ତ ଆସିଥିଲା । ଗାଡ଼ି ଷ୍ଟାର୍ଟ ହେଲା...

ଆଉ ସେ ଭୋର୍ ତିନିଟା ବେଳକୁ ଜେନେଭାରେ ପହଞ୍ଚିଥିଲା । ଏବେ ସେ ଯିବ କୁଆଡ଼େ ? ଏଇ ଅସମୟରେ । ଭାବିଲା ଷ୍ଟେସନରେ ରହିଯିବ । ପୁଣି ସକାଳ ସାତଟା କି ଆଠଟା ବେଳକୁ କମ୍ୟୁନ୍‌କୁ ଫୋନ୍ କରି ନିଜର ଠିକଣା ଖୋଜିନେବ ।

ଜେନେଭାରେ ରେଲ୍‌ଓ୍ୱେ ଓ୍ୱେଟିଂରୁମ୍‌ରେ ସେ ଯାଇ ଗଡ଼ିପଡ଼ିଥିଲା । ଥକ୍କା ଆଉ ହତାଶ । ଗାଡ଼ି ସେ ପାର୍କିଂରେ ଛିଡ଼ା କରି ଦେଇଥିଲା । ଓ୍ୱେଟିଂରୁମ୍‌ରେ ଥଣ୍ଡାର କୌଣସି ପ୍ରଭାବ ନଥିଲା, ମାଆର କୋଳ ଭଳି ଏହା ଥିଲା ଖୁବ୍ ଉଷୁମ୍... ଗଡ଼ି ପଡୁ ପଡୁ ସେ ଶୋଇ ଯାଇଥିଲା ଗଭୀର ନିଦରେ ।

କିନ୍ତୁ ପାଞ୍ଚଟା ବେଳକୁ ସଫା କରିବାକୁ ଆସିଥିବା କର୍ମଚାରୀ ପାଟିକରି କହିଲେ, ''ୟୁ ନିଗର, ଗେଟ୍ ଅପ୍... ଗେଟ୍ ଅପ୍... !

ଆଉ ଏବେ ତାକୁ ଉଠିବାକୁ ପଡ଼ିଥିଲା । ଆଉ କ'ଣ କରିପାରିଥାଆନ୍ତା ! ରାତିର ଝଡ଼ ଥମି ଯାଇଥିଲା । ଓ୍ୱେଟିଂରୁମ୍‌ର ଘଟଣା ତା'ର ବିତରାଗୀ ମନ ଉପରେ ବିଶେଷ ପ୍ରଭାବ ପକେଇ ପାରିନଥିଲା । ତାକୁ ଜଣାଥିଲା ଯେ, ତା' ସହି ଏସବୁ ବାରମ୍ବାର ଘଟି ଚାଲିବ... ଆଉ ଏ ଝଡ଼ ବହି ଚାଲିବ ସବୁବେଳେ...

ସେ ଏଣେତେଣେ ବୁଲିବାରେ ଲାଗିଲା, ଆଉ ଯେତେବେଳେ ସାତଟା ବାଜିଲା ସେ 'କମ୍ୟୁନ୍'କୁ ଟେଲିଫୋନ୍ କଲା । ସେ ଯେଉଁଠି ଅଛି, ତାହା ଜଣାଇବାକୁ ଚେଷ୍ଟାକରି ବିଫଳ ହେଲା, କାରଣ ସେପଟେ ଟେଲିଫୋନ୍ ଧରିଥିବା 'ଜୁନିଆ'କୁ ଇଂରାଜୀ ଜଣାନଥିଲା । ଖୁବ୍ ମୁସ୍କିଲରେ ସେ ତା' କଥା ବୁଝିଲା । ସେ କେବଳ ତିନିଟି ଶବ୍ଦ କହିଲା- ଇନ୍ଦିଆନ୍... ଷ୍ଟେସନ୍... ଇଆହ !

ଆଉ ପ୍ରାୟ ଅଧଘଣ୍ଟେ ପରେ ଜୁନିଆ ତାକୁ ଖୋଜି ଖୋଜି ଆସି ସେଠି ପହଞ୍ଚିଥିଲା । 'ଇନ୍ଦିଆନ୍'କୁ ଚହ୍ନିବାରେ ତା'ର ଅସୁବିଧା ହେଇନଥିଲା । ସେ ଜୁନିଆର ଖୋଜିଲା ଖୋଜିଲା ଆଖିକୁ ବି ଠିକ୍ ଚିହ୍ନି ନେଇଥିଲା । ଜୁନିଆ ତା' ସହ ହାତ ମିଳେ କହିଲା- ଗୋ... ଅର୍ଥାତ୍ ଚାଲ ।

ସେ ନିଜର ଗାଡ଼ି ବିଷୟରେ କହିବାରୁ ସେ କିଛି ବୁଝିପାରିଲାନି । ଜୁନିଆ ନିଜର ସେଣ୍ଟ୍ରୋ କାର୍ ନେଇ ଆସିଥିଲା । ପୁଣି ଜୁନିଆକୁ ସେ ଇସାରାରେ ବୁଝେଇଦେଲା ଯେ ସେ ଟ୍ରେନ୍‌ରେ ନ ଆସି ବାଇ ରୋଡ଼ ଆସିଚି । ତାକୁ ସେଠାରେ ଛିଡ଼ା କରେଇ ଜୁନିଆ କିଛି

ସମୟ ପାଇଁ କେଉଁଠାକୁ ଚାଲିଗଲା । ଫେରିଲା ବେଳକୁ ତା' ହାତରେ ଗୋଟେ କାଗଜ ଥିଲା । ଏହା ଥିଲା ଷ୍ଟେସନରେ କାର୍ ପାର୍କିଂର ରସିଦ୍ ।

ଜୁନିଆ ନିଜର ଛୋଟିଆ ସେଣ୍ଟ୍ରୋ ଗାଡ଼ିରେ ତାକୁ ବସେଇ ଆଗକୁ ଚାଲିଲା । କିଛି ସମୟ ପରେ ସେମାନେ ରହିବା ଜାଗାରେ ପହଞ୍ଚିଗଲେ । ତା'ର ତ 'ମାରିୟନ୍ ଏଙ୍କିଲ୍'ଙ୍କ କମ୍ୟୁନ୍‌ରେ ରହିବାର ଥିଲା, କିନ୍ତୁ ଏ ଜାଗା ତାକୁ ତ କମ୍ୟୁନ୍ ଭଳି ଲାଗୁନଥିଲା । କିନ୍ତୁ ଜୁନିଆ ସହ ବେଶୀ କିଛି କଥାହେବା ବି ସମ୍ଭବ ନଥିଲା । କାରଣ ଜୁନିଆ ଇଂରାଜୀ ବୁଝୁନଥିଲା । ସେ ଥିଲା ଫ୍ରେଞ୍ଚ ଭାଷୀ ଓ କିଛିଟା ଇଟାଲିୟନ୍ ଓ ଜର୍ମାନ୍ ବୁଝିପାରୁଥିଲା ।

ସିଡ଼ିରେ ଚଢ଼ି ସେ ଉପରେ ପହଞ୍ଚିଲାବେଳକୁ ଦୁଆରର ତାଲା ଖୋଲି ଜୁନିଆ କହିଥିଲା 'ଷ୍ଟୁଡିଓ... ମାଇଁ...

ଆଉ ସେ ପ୍ୟାରିସ୍ ସହରର ଦୁଇ ଚାରିଦିନର ଅନୁଭୂତିରୁ ଜାଣି ଯାଇଥିଲା ଯେ ଏହା ହେଉଚି ଜୁନିଆର ନିଜ ରୁମ୍... ସେ ବି ସେଇଆ କହିଥିଲା । କିଛି ସମୟ ପାଇଁ ସେ କଛି ବୁଝିପାରି ନଥିଲା... ଯେ 'କମ୍ୟୁନ୍'ରେ ପହଞ୍ଚିବା ପରିବର୍ତ୍ତେ ସେ ଜୁନିଆର ରୁମ୍‌ରେ କେମିତି ଓ କାହିଁକି ପହଞ୍ଚି ଯାଇଥିଲା... ଠିକ୍ ନମ୍ବରକୁ ତ ସେ ଟେଲିଫୋନ୍ କରିଥିଲା... ଷ୍ଟୁଡ଼ିଓ ଅର୍ଥାତ୍ ରୁମ୍‌ର ଏକ କୋଣରେ ଟେଲିଫୋନ୍ ଥୁଆ ହେଇଥିଲା... କିନ୍ତୁ ସେଥିରେ ଫୋନ୍ ନମ୍ବର ଲେଖା ନଥିଲା । ସେଇ କୋଠରୀଟିର ଅନ୍ୟ କୋଣରେ ଥିଲା ଏକ ଛୋଟ ପାର୍ଟିସନ୍... ତାହା ଥିଲା ଜୁନିଆର କିଚନ୍... ସେଠାରେ ଚୁଲା ଓ ରୋଷେଇ ଜିନିଷ ଥିଲା ।

ସେ ସେଠାରେ ଛିଡ଼ାହେଇ ଚାହା କରୁଥିଲା । କିନ୍ତୁ ସେ ପ୍ରତିଟି ବିତିଯାଇଥିବା ମୁହୂର୍ତ୍ତ ସହିତ ଗଭୀର ରହସ୍ୟ ମଧ୍ୟକୁ ଓହ୍ଲେଇ ଚାଲିଥିଲା ଯେମିତି... ଏ ଜୁନିଆ... ଏ ହେଉଚି... ତା' ରୁମ୍... ଫୋନ୍.. ପୁଣି ଷ୍ଟେସନକୁ ଆସି ତାକୁ ସେତେବେଳକୁ ଜୁନିଆ ଚାହା ମଗ୍ ସାମ୍ନାରେ ରଖିଦେଇଥିଲା । ସେ ଚାହା ପିଇଲା । ଚାହା ପିଉଁ ପଉଁ ସେ ଫୋନ୍ ନମ୍ବରର ରହସ୍ୟ କ'ଣ ଜାଣିବାକୁ ଚାହିଁଲା । ଜୁନିଆ ନମ୍ବର କହିଲା... କିନ୍ତୁ ସେ ଫ୍ରେଞ୍ଚ ଗଣନା ବୁଝିପାରିଲାନି, ତେଣୁ ଜୁନିଆ ଇଂରାଜୀ ସଂଖ୍ୟାରେ ଗୋଟେ କାଗଜରେ ଟେଲିଫୋନ୍ ନମ୍ବର ଲେଖିଦେଇ ଦେଖାଇଲା ଏବଂ ତାକୁ ଆଶ୍ୱସ୍ତ କଲା ଯେ ସେ ଠିକ୍ ଜାଗାକୁ ଆସିଚି... କିଛି ଚିନ୍ତା କରିବାର ନାହିଁ ।

କିଚିନ୍ ଆଡୁ ଚଡ୍ ଚଡ୍‌ର ଶବ୍ଦ ଶୁଭିଲା । ଜୁନିଆ ଉଠିଯାଇ ଗୋଟେ ପ୍ଲେଟରେ ଭଜା ହେଇଥିବା 'ସାଁସେଜ୍' ଆଣି ସାମ୍ନାରେ ରଖିଲା... ଏବଂ ଖାଇବାକୁ ସଂକେତ କଲା... ଖାଅ... ଗୋଟେ 'ସାଁସେଜ୍' ସେ ବି ଉଠେଇ ନେଲା ।

ଅର୍ଥାତ୍ ବର୍ତ୍ତମାନ ସେମାନଙ୍କର ଚାହା ଜଳଖିଆ ସରି ଯାଇଥିଲା । ସେ କିଛି ବୁଝିପାରୁ ନଥିଲା ଯେ ବର୍ତ୍ତମାନ କ'ଣ କରିବ ?... କାମ ତ ଥିଲା ଅନେକ ଓ ତାକୁ ବି ଆହୁରି ଦୂରକୁ ଯିବାକୁ ଥିଲା । ଲୁଜାନ୍ ଯାଇ ତାକୁ 'ଟ୍ରିବ୍ୟୁ ଦି ଲୁଜାନ୍'ର ସାମ୍ୱାଦିକ ପିୟରେ

କୋଲ୍‌ବଙ୍କୁ ଭେଟିବା କଥା... ପୁଣି ଜେନେଭାରେ ଗୋଟେ ଯୋଡ଼େ କାମ ବି ଥିଲା । କିନ୍ତୁ ଭାଷା ଜାଣି ନଥିବାରୁ ଯେମିତି ସେ କାମ ସବୁ ଅଟକି ରହିଥିଲା । କିନ୍ତୁ ଏଇ କାମ ସବୁ ଅପେକ୍ଷା ଥକ୍କା ହିଁ ତାକୁ ଖୁବ୍ କଷ୍ଟ ଦେଉଥିଲା ଓ ବିଗତ ରାତିର ସମସ୍ତ କୁହୁଳୁଥିବା ଅପମାନ ଓ ପୀଡ଼ାକୁ ଭୁଲିଯାଇ ସେ ଶୋଇଯିବାକୁ ଚାହୁଁଥିଲା ।

ଚାହା ଜଳପାନ ପରେ ଜୁନିଆ ଟୁଥ୍‌ପେଷ୍ଟ, ଗୋଟେ ନୂଆ ବ୍ରଶ୍ ଏବଂ ଛୋଟ ଟାଓ୍ୱେଲ୍ ଆଣି ତା' ହାତକୁ ବଢ଼େଇଦେଇ ଦୁଆର ବାହାରେ ଗ୍ୟାଲେରୀରେ ତିଆରି ହେଉଥିବା ବାଥ୍‌ରୁମ୍ ଆଡ଼କୁ ଇସାରା କଲା ଓ ଇସାରାରେ ବୁଝେଇଦେଲା ଯେ ତାକୁ ଜଣାଅଛି ଯେ ତା'ର ସମସ୍ତ ଜିନିଷପତ୍ର ଷ୍ଟେସନ୍‌ରେ ଥିବା କାର୍ ଭିତରେ ଅଛି । ଆହୁରି ଏକଥା ବ ସଂକେତରେ ଜଣେଇଦେଲା ଯେ- ସେ ଯଦି ଚାହେଁ ତେବେ ଓଭରକୋଟ୍, ଜୋତା, ମୋଜା ଖୋଲିଦେଇ ବ୍ରଶ୍ କରିନେଉ ଏବଂ ଯଦି ଆବଶ୍ୟକ, କିଛି ସମୟ ନିମନ୍ତେ ବିଶ୍ରାମ ବି କରିପାରେ । ସେ ପର୍ଯ୍ୟନ୍ତ ସେ ଏକ କାମରେ ତିନି ଚାରି ଘଣ୍ଟା ବାହାରକୁ ଯାଇ ଫେରି ଆସିବ ।

ଦୁଇଟି ଯାକ ଚାବି ଦେଇ ଦେଇ ଜୁନିଆ ନିଜ କାମରେ ଚାଲିଗଲା ।

ଫେରିଲାବେଳକୁ ସେ ଗଭୀର ନିଦରେ ଶୋଇ ଯାଇଥିଲା । ସେ ତା' କାନ୍ଧ ହଲେଇ ଉଠେଇଲା ଆଉ ତାକୁ ଘଣ୍ଟା ଦେଖି କହିଲା ଏବେ ଲଞ୍ଚର ସମୟ ହେଇଯାଇଚି । ତେଣୁ 'ଗୋ'- ମାନେ ଚାଲ ।

ସେ ତାକୁ ସେଇ ସେଣ୍ଟ୍ରୋ କାର୍‌ରେ ଜେନେଭା ଲେକ୍ ପାଖକୁ ନେଇଗଲା । ସେଠାରେ ଏକ ଭବ୍ୟ ରେସ୍ତୋରାଁରେ ତାକୁ ଖାଇବାକୁ ଦେଲା... ପୁଣି ତାକୁ ହ୍ରଦରେ ପହଁରୁଥିବା କଳାକଳା ହଂସ ଦେଖେଇଲା ଓ ଶେଲେ ଶେଲେ କହିଲା । ସେ ଭାବିଲା- ଜୁନିଆ ପ୍ରାୟ ଇଂରେଜୀ କବି ଶେଲିଙ୍କ କଥା କହିବାକୁ ଚାହୁଁଚ । ଯିଏ ଏମିତି ଏକ ଝଡ଼ ରାତିରେ ଏଇ ହ୍ରଦ ମଧ୍ୟରେ ପ୍ରାଣ ହରେଇଥିଲା । ସେ ଆତ୍ମହତ୍ୟା କରିଥିଲେ ।

ପୁଣି ସେ ତାକୁ ପତ୍ରଝଡ଼ାରେ ଥୁଣ୍ଟା ହେଇଯାଇଥିବା ଜଙ୍ଗଲ ଦେଖେଇବାକୁ ନେଇ ଯାଇଥିଲା... ପତ୍ରଝଡ଼ାର ଦୃଶ୍ୟ ଦେଖି ସେ ବିମୁଗ୍ଧ ହେଇଯାଇଥିଲା । ପ୍ରାୟ ଛଟି ହେତୁ ଅନେକ ଯାତ୍ରୀ ହ୍ରଦ ପାଖରେ ଓ ଜଙ୍ଗଲରେ ଥିଲେ । କିନ୍ତୁ ଏଠାରେ ଭିଡ଼ ଥିବା ସତ୍ତ୍ୱେ ସ୍ଥାନଟି ବେଶ୍ ନିରୋଳା ଥିଲା ।

ସେ ଜୁନିଆକୁ ଦେଖି ଖୁବ୍ ମୁଗ୍ଧ ହେଇଥିଲା । ଏ କିଭଳି ଝିଅ... କେତେ ବିଚିତ୍ର ଏବଂ ଭିନ୍ନ । ଜୁନିଆ ଯେମିତି ତା'ର ଜନ୍ମ ଜନ୍ମାନ୍ତରର ବନ୍ଧୁ ହେଇ ତା' ସହ ଉନ୍ମୁକ୍ତ ରୂପରେ ବ୍ୟବହାର କରୁଥିଲା ।

ଆଉ ଜୁନିଆ ଏବେ ଏକ ମୁକ୍ତ ସ୍ୱାଧୀନ ପକ୍ଷୀ ଭଳି ପତ୍ରଝଡ଼ାର ଧଳା ଗାଲିଚା ଉପରେ ଦଉଡ଼ି ଚାଲିଯାଇ କୁହୁଡ଼ି ଭିତରେ ଅଦୃଶ୍ୟ ହେଇଗଲା... ତା'ର ଯେମିତି ପର

ଗଳୁରି ଉଠିଥିଲା ।

କେହି ଡାକିଲା ଭଳି ଶବ୍ଦ ହେଲା... କିନ୍ତୁ ତାକୁ ଏଠାରେ ଡାକିବ ଆଉ କିଏ ?... କିନ୍ତୁ ତା' ମନ ଭିତରେ ଅନୁରଂଜିତ ହେଉଥିଲା... ଜୁନିଆ ତାକୁ କ'ଣ ଭାବିଛି କି ?... ସେ ମନକୁ ମନ ତା'ର ଉତ୍ତର ଦେଇ ଦେଇଥିଲା । ଜୁନିଆ, ଜୁନିଆ !!

କିନ୍ତୁ ତା' ଉତ୍ତରରେ କୌଣସି ପ୍ରତ୍ୟୁତ୍ତର ଶୁଣାଯାଇ ନଥିଲା ।

ପତ୍ରଝଡ଼ାରେ ଭରିଯାଇଥିବା ସେଇ ସଫେଦ୍ ଜଙ୍ଗଲ ଏବେ ତାକୁ ଏକ କୁହୁକ ଭଳି ଜଣାପଡୁଥିଲା... ଯଦି ଜୁନିଆ ସେଇ କୁହୁଡ଼ି ଭିତରୁ ନ ଫେରେ... ତେବେ ସେ କ'ଣ କରିବ ?

ହଠାତ୍ ଚାରିଆଡ଼େ ଅନ୍ଧକାର ବିଛି ହେଇଗଲା । ସଫେଦ୍ ଜଙ୍ଗଲ କଜଳ କଳା ରୂପ ଧାରଣ କଲା ଓ ବର୍ଷା ହେବାରେ ଲାଗିଲା । ବର୍ଷା ଥଣ୍ଡା ଛୁଞ୍ଚି ଭଳି ଦେହର ଖୋଲା ଜାଗାରେ ପଶିଯିବାରେ ଲାଗିଲା... ଧୀରେ ଧୀରେ ତା' ଓଭରକୋଟ୍ ବି ଭିଜିଗଲା... ଆଉ ପତ୍ରଝଡ଼ାର ଶୁଖିଲା ପତ୍ର ତଳେ ଜମା ହେଇଥିବା ଥଣ୍ଡା କାଦୁଅ ତା'ର ଶୁଖି ଯାଇଥିବା ଜୋତା ଓ ମୋଜାକୁ ପୁଣି ଭିଜେଇ ଦେଲା ।

ଠିକ୍ ସେଇ ସମୟରେ ଗୋଟେ ପ୍ରଜାପତି ଭଳି ଜୁନିଆ ସେଇ କୁହୁଡ଼ିର ଦୁନିଆଁ ଭିତରୁ ବାହାରି ତା' ପାଖକୁ ଆସିଥିଲା । ଲୁଗା ଭିଜିଯାଇ ତା' ଦେହରେ ଜଡ଼ି ଯାଇଥିଲା । ଆଉ ସେ ତାକୁ ନିକଟରୁ ଖୁବ୍ ଆଖିଭରି ଦେଖିଥିଲା... ସେ ଲାଗୁଥିଲା ଯେମିତି ଶଙ୍ଖମର୍ମରର ଲଙ୍ଗଳା ମୂର୍ତ୍ତିଟିଏ... ସେ ଜାଣିପାରି ନଥିଲା ଯେ ଜୁନିଆ କେଉଁ ମୋଟେଇର ଯୁବତୀ ନାଁ ଶଙ୍ଖମର୍ମରର ଏକ କଳାକୃତି ।

ସେଇ ଶୀତଳ ଅନ୍ଧାର ରାତିରେ ତା' ହାତଧରି ଜୁନିଆ ସେଣ୍ଟ୍ରୋ କାର ପର୍ଯ୍ୟନ୍ତ ଟାଣି ଟାଣି ନେଇଯାଇଥିଲା । ଆଉ ଷ୍ଟୁଡ଼ିଓ ଆଡ଼କୁ ତାକୁ ନେଇଯାଇଥିଲା । ବର୍ଷା ଆହୁରି ଜୋର୍‌ରେ ହେଉଥିଲା, କିନ୍ତୁ ଏ ପର୍ଯ୍ୟନ୍ତ ବରଫ ବର୍ଷାରେ ବଦଳିଯାଇ ନଥିଲା । ସେ ଷ୍ଟେସନ୍ ପର୍ଯ୍ୟନ୍ତ ଯାଇ ନିଜ ଲୁଗା ଆଣିବାକୁ ଚାହୁଁଥିଲା ।

କିନ୍ତୁ କିଛିଟା ସଂକୋଚ, ବାଧା ଓ ଜୁନିଆର ଉନ୍ମୁକ୍ତ ଲୟକୁ ଭାଙ୍ଗିଦେବାର ସାହସ କରି ନଥିଲା ।

ହଠାତ୍ ଥଣ୍ଡା ପବନ ବହିବା ଆରମ୍ଭ କରିଦେଇଥିଲା । ସେ ନିଜର ଭିଜିଯାଇଥିବା ଓଭରକୋଟ୍ ବାହାର କରି ଜୁନିଆକୁ ଦେବାକୁ ଚାହିଁଥିଲା, କିନ୍ତୁ କାର୍‌ରେ କମ୍ ଜାଗା ଓ ଶଙ୍ଖମର୍ମରା ଜୁନିଆକୁ ବାରମ୍ବାର ଦେଖିବାର ଲୋଭ ତାକୁ ଏଥିରୁ ନିବୃତ୍ତ କରିଥିଲା...

ଘରେ ପହଞ୍ଚିବା ପରେ ଜୁନିଆ ଇସାରାରେ ପଚାରିଥିଲା କି ପ୍ରଥମେ ତୁମେ ଗାଧୋଇବ ନା ମୁଁ ?... ଗାଧୋଇବା କ'ଣ ଆବଶ୍ୟକ... ? କିନ୍ତୁ ଜୁନିଆ ନିମନ୍ତେ ଏକ ବିଚିତ୍ର ଆକର୍ଷଣ ଓ ଆସକ୍ତି ତାକୁ ପ୍ରଥମେ ଗାଧୋଇବାକୁ ପ୍ରସ୍ତୁତ କରିଦେଇଥିଲା । କିନ୍ତୁ

ତା' ପାଖରେ ଲୁଗା କାହିଁ ? ତା'ର ଦ୍ୱନ୍ଦ୍ୱଗ୍ରସ୍ତତାକୁ ଲକ୍ଷ୍ୟକରି ଜୁନିଆ ତାକୁ ଗୋଟେ ଗାଉନ୍ ଦେଇ କହିଥିଲା ''ଆଜି ଏହାକୁ ପିନ୍ଧି ଶୋଇଯାଅ... କିଏ ଦେଖିବ ଯେ ତୁମେ ଏକ ଗାଉନ୍ ପିନ୍ଧି ରାତିରେ ଶୋଇଚ ? ସକାଳକୁ ତୁମ ଲୁଗା ଶୁଖି ଯାଇଥିବ... ସେତେବେଳେ ତୁମେ ତାହା ପିନ୍ଧିନେବ ।

... ଆଉ ଗ୍ୟାଲେରୀର ବାଥ୍ରୁମ୍‌ରୁ ଗରମ ପାଣିରେ ଗାଧୋଇ ସାରି ସେ ଆସିବା ପର୍ଯ୍ୟନ୍ତ ଜୁନିଆ ସେମିତି ଭିଜା କପଡ଼ାରେ ଏକ ଶଙ୍ଖମର୍ମର ମୂର୍ତ୍ତିପର ବସି ଚାହା ପିଉଥିଲା । ସେ ଜୁନିଆର ଗାଉନ୍ ଦେଖି ଖୁବ୍ ଅସଂଯତ ଅନୁଭବ କରୁଥିଲା ।

ପୁଣି ସେ ଗାଧୋବାକୁ ଚାଲିଗଲା । ଆଉ ସେଠାରୁ ଫେରିବା ବେଳକୁ ଚୁଲାଥିବା କିଚେନ୍‌ରେ ଡାଲି ଓ ପୋର୍କର ଖିଚୁଡ଼ି ସିଝି ରେଡି ହେଇଯାଇଥିଲା ।

ଖିଚୁଡ଼ି ଖାଇବା ପରେ ତାଙ୍କ ସାମ୍ନାରେ ଥିଲା ଶୋଇବା ସମସ୍ୟା । ବିଛଣା ଗୋଟିଏ ହିଁ ଥିଲା ଏବଂ ଥଣ୍ଡା ଖୁବ୍ ବଢ଼ି ଯାଇଥିଲା । ଦ୍ୱି'ପହରେ ସେ ଥିଲା ଏକା, ତେଣୁ ଶୋଇଯାଇଥିଲା ଶାନ୍ତିରେ । କିନ୍ତୁ ଏବେ... ଏଇ ରାତିରେ... ?

ସେତେବେଳକୁ ଜୁନିଆ ନିଜର ଗାଉନ୍ ସଂପୂର୍ଣ୍ଣ ଖୋଲିଦେଇ ଏକ ଜୀବନ୍ତ ଶଙ୍ଖମର୍ମର ମୂର୍ତ୍ତି ରୂପରେ ଥିଲା ତା' ସାମ୍ନାରେ ଆଉ ସେ ବିଛଣାରେ 'ଇଲେକ୍‌ଟ୍ରିକ୍ କ୍ୱିଲ୍ଟ' ଲଗେଇ ତାକୁ ଡାକିଥିଲା 'ଗୋ' ମାନେ 'ଆସ'...

ବିଦ୍ୟୁତ୍ ତାପୀକୃତ ସେ ରେଜେଇ ଭିତରେ ଶେଷରେ ଜୁନିଆ ସହ ସେ ବି ପଶିଯାଇଥିଲା ଏବଂ କଡ଼ ଲେଉଟାଇ ତା' ପାଇଁ ତିନି ଚତୁର୍ଥାଂଶ ଅଂଶ ଛାଡ଼ି ଦେଇଥିଲା... ସେ ଅଧାରୁ ଅଧିକ ଜାଗା ପାରିହେଇ ବି ଜୁନିଆ ପାଖରେ ପହଞ୍ଚିପାରି ନଥିଲା... ଆଉ ଜୁନିଆ ଅଧାବିଛଣାର ଏଇ ଲକ୍ଷ୍ମଣରେଖା ପାରିହେଇ ଯାଇଥିଲା ।

ସକାଳେ ଉଠିଲାବେଳକୁ ଚାହା ତିଆରି ହେଇସାରିଥିଲା । ସାଥିରେ ସିଝା ଅଣ୍ଡାର ଜଳଖିଆ । ତା' ସହ ବିଗତ ଦିନ ଭଳି ଜୁନିଆ ତା' ସାମ୍‌ନାରେ ପେଷ୍ଟ ଏବଂ ବ୍ରଶ୍ ରଖି ଦେଇଥିଲା... ଆଜି ଆଉ ତାକୁ ଇସାରା କରି କିଛି କହିବାର ଆବଶ୍ୟକତା ନଥିଲା ! ସେ ଜାଣିଥିଲା ବାଥ୍ରୁମର ଚାବି କେଉଁଠି ଅଟକି ରହଛି ।

ବାଥ୍ରୁମ୍‌ରୁ ଫେରିବା ବେଳକୁ ଜୁନିଆ ରେଡି ହେଇ ଏକ ସୁନ୍ଦର ପେଣ୍ଟିଂ ଭଳି ଦେଖାଯାଉଥିଲା । ସେ ମନଭରି ତାକୁ ଦେଖିଲା । ଜୁନିଆ ହସି ହସି କହିଲା 'ଗୋ' ମାନେ ଚାଲ ।

ଆଉ ତାକୁ ଷ୍ଟେସନ୍‌ରେ ଛିଡ଼ା ହେଇଥିବା ଗାଡ଼ି ପର୍ଯ୍ୟନ୍ତ ପହଞ୍ଚାଇ ଦେବାପାଇଁ ସେ ଜେନେଭାର ସ୍ୱିସ୍ ବ୍ୟାଙ୍କ ଥିବା ରାସ୍ତାବାଟେ ଯାଇ ଏକ ବହୁତ ବଡ଼ ଡିପାର୍ଟମେଣ୍ଟାଲ୍ ଷ୍ଟୋର୍ ସାମ୍ନାରେ ପହଞ୍ଚିଥିଲା । ସେ ନିଜ ଗାଡ଼ି ପାର୍କିଂ କଲା ଓ ତାକୁ ଡିପାର୍ଟମେଣ୍ଟାଲ୍ ଷ୍ଟୋର୍ ସାମ୍ନାରେ ଲାଉଞ୍ଜ୍‌ରେ ବସାଇ ନିଜେ ଭିତରକୁ ଗଲା । ସେ ଭାବିଲା ଜୁନିଆର କିଛି

କିଣିବାର ଅଛି ।

ବହୁତ ସମୟ ପରେ ସେ ଯେତେବେଳେ ଫେରିଲା, ତା' ସହ ଏକ ସୁନ୍ଦର ଯୁବକ ଥିଲା । ସେ 'ହେଲୋ' କହି ପାଖରେ ବସିଗଲା । ଜୁନିଆ ତା' ସେପଟେ ବସିଥିଲା । ଏବଂ ଖୁବ୍ ଶାଳୀନତାର ସହ ଯେ ଯୁବକଟି କଥା ଆରମ୍ଭ କରିଥିଲା...

ମୋ ନାଁ ଫିଲିପ୍... ମୁଁ ଏଇ ଡିପାର୍ଟମେଣ୍ଟାଲ୍ ଷ୍ଟୋର୍‌ର ଜଣେ କର୍ମଚାରୀ ଓ ଜୁନିଆ ସହ ମୋର ବବାହ ସ୍ଥିର ହେଇଚି... ଆମେ ଖୁବ୍ ଜଲ୍‌ଦି ବିବାହ କରିବାକୁ ଯାଉଛୁ । ଏ ମୋତେ କହିଥିଲା ତୁମେ ଗତକାଲି ସକାଳେ ଆସିଥିଲ ଆଉ ଖୁବ୍ ଥକି ଯାଇଥିଲ ବି ।

ଜୁନିଆର ଭବିଷ୍ୟତର ସ୍ୱାମୀ ଇଂରେଜୀରେ କଥା କହୁଥିଲା, ତେଣୁ ସେ ଚିନ୍ତାକଲା ଯେ ଏଇମିତି ଜଣେ ଅଜଣା ଅଶୁଣା ଲୋକ ଭାବରେ ଆସି ଏଠାରେ ରହିଥିବାର ରହସ୍ୟ ସ୍ପଷ୍ଟ କରିଦେବ । ସେ କହିଲା- ଆଜ୍ଞା ହଁ, ମୁଁ ବରଫ ଝଡ଼ ଅତିକ୍ରମ କରି ଆସିଥିଲି... ଏବଂ ବାସ୍ତବରେ ମୁଁ 'ମେରିୟନ୍ କମ୍ୟୁନ୍'ରେ ରହିବାକୁ ଚାହିଁଥିଲି... ମୁଁ ଟେଲିଫୋନ୍ କରିଥିଲି...

ହଁ, ଆପଣଙ୍କ ଟେଲିଫୋନ୍ ଠିକ୍ ଥିଲା । ଆଉ... ହଁ... ଦେଖନ୍ତୁ ଜୁନିଆ କହୁଛି କି ସେ 'କମ୍ୟୁନ୍' ସେଠାରେ ନାହିଁ କନ୍ତୁ ଟେଲିଫୋନ୍ ଅଛି... କ'ଣ ଏହା ଖୁବ୍ ମଜାର କଥା ନୁହଁ ?

ଆଉ ଜୁନିଆର ସୁନ୍ଦର ଖିଲି ଖିଲି ହସ ସେ ଫିଲିପ୍‌ର କାନ୍ଧ ସେପଟୁ ଶୁଣିପାରୁଥିଲା...

ଗତକାଲି ମୋର ଛୁଟି ଥିବାରୁ ଜୁନିଆ ତୁମକୁ ମୋ ସହ ଭେଟ କରେଇ ପାରିନଥିଲା... ଆଜି ସେଥିପାଇଁ ନେଇ ଆସିଚି... ଫିଲିପ୍ କହିଲା ।

ମୁଁ... ମୁଁ... ଜୁନିଆକୁ ବହୁତ ଧନ୍ୟବାଦ ଦେବାକୁ ଚାହେଁ... ବହୁତ, ବହୁତ... ! ତା' ମୁହଁରୁ ଅନାୟାସରେ ବାହାରି ଆସିଲା ।

ଆରେ... ଏଥିରେ ଧନ୍ୟବାଦ ଦେବାର କ'ଣ ଅଛି ?... ହଁ... କ'ଣ... ଜୁନିଆ କହୁଥିଲା କାଲି ରାତିରେ ବି ଖୁବ୍ ଜୋର୍‌ରେ ଝଡ଼ ଆସିଥିଲା... ତୁମେ ସେଥିରେ କୁଆଡ଼େ ହଜି ଯାଇଥାଆନ୍ତ... ସେଇଥିପାଇଁ ସେ ସକାଳ ପର୍ଯ୍ୟନ୍ତ ଅପେକ୍ଷା କଲା... ହଁ... ହଁ... ଆଉ କ'ଣ...

ଜୁନିଆ ଜାଣିବାକୁ ଚାହୁଁଚି ତୁମେ କିଏ ?

ତୁମେ କିଏ ? ତୁମେ କିଏ ?... ଜୁନିଆର ଏ ପ୍ରଶ୍ନ ଏକ ଆଦିମ ପ୍ରଶ୍ନ ଭଳି ତା'ର ସମଗ୍ର ଚେତନାରେ ବିଜୁଳି ଭଳି ଚମକିଯାଇ ବାରମ୍ବାର ଅନୁଗୁଞ୍ଜିତ ହେଇ ଚାଲିଥିଲା...

# ରାତି, ନାରୀ ଓ ପାପ

ମୁଁ ଯେବେ ଓକିଲବାବୁଙ୍କ ଘରୁ ବାହାରି ଆସେ ମୋତେ ସେ ସାହିର ଲୋକମାନେ ଏକ ଆଶ୍ଚର୍ଯ୍ୟ ଦୃଷ୍ଟିରେ ଦେଖିଥାଆନ୍ତି । ସେଇସବୁ ଲୋକମାନେ ହିଁ ଏସବୁ କଥା ଆଲୋଚନା କରିଥାଆନ୍ତି ଯେଉଁମାନେ ସେ ବସ୍ତିର ଗଳିରେ ଥିବା ପାନଦୋକାନରେ ଅବାଗିଆ ପ୍ୟାଣ୍ଟ ପିନ୍ଧି, ମୁଣ୍ଡରେ ଅସ୍ତବ୍ୟସ୍ତ ବାଳ ରଖି ହାତରେ ସିଗାରେଟ୍ ଧରି ଠିଆହେଇ ଗୁମାଲ୍ ନଚେଇ ଚାଲିଥାଆନ୍ତି, ବେଳେ ବେଳେ ଓକିଲବାବୁଙ୍କ ବିଷୟରେ ଯାଡୁ ସ୍ୟାଡୁ ଗପସପ କରନ୍ତି । କେବଳ ଯେ ଓକିଲବାବୁଙ୍କ ବିଷୟ ସ୍ୱତନ୍ତ ରୂପରେ ଚର୍ଚ୍ଚାହୁଏ ତା' ନୁହଁ, ଓକିଲଙ୍କ ସ୍ତ୍ରୀଙ୍କ ବିଷୟରେ ମଧ୍ୟ ଅନାବନା କଥା ଗପି ସେମାନେ ନିଜ ମନ୍ଦ ସ୍ୱଭାବର ପରିଚୟ ଦେଇଥାଆନ୍ତି ।

ଦିନେ ମୁଁ ଓକିଲବାବୁଙ୍କ ଘରକୁ ଗଲାବେଳକୁ

ପଶୁ ପଶୁ ଓକିଲଙ୍କ ସ୍ତ୍ରୀଙ୍କର କ୍ରୋଧ ଜର୍ଜରିତ ସ୍ୱର ଶୁଣିବାକୁ ପାଇଲି । ପ୍ରାୟ କୌଣସି ଏକ ଚାକରାଣୀ କମଳୀର କାନ୍ଦିବା ସ୍ୱର ଓ ତା' ସହ ମାଲିକାଣୀଙ୍କର ପ୍ରତାଡ଼ନା... ''ଠକ, କେବଳ ନଷ୍ଟ କରିବା ଜାଣିଛୁ । ଗୋଟେ ପ୍ଲେଟ୍ ଚିନି ଆସେ କେଉଁଠୁ ?'' ଏବଂ ମଝିରେ ମଝିରେ ଓକିଲବାବୁ ପୁଣି କହୁଥାଆନ୍ତି 'ଆରେ ବାବା' ଟିକେ ଚୁପ୍ ରୁହ, ଝିଅପିଲାଟା ପରା... ଛାଡ଼...

''ପିଲା ହେଲା ତ କ'ଣ ହେଲା ? ଅଢ଼େଇ ସେର ତ ଖାଉଚି, କାମ କରିବା ଓ ନଷ୍ଟ କରିଲା ବେଳକୁ ପିଲା ଆଉ ଖାଇଲା ବେଳକୁ ରାକ୍ଷସୀ, ତୁମେ ଏସବୁ ମାମଲାରେ କଥା ନ କହିବା ଭଲ'', ଓକିଲଙ୍କ ସ୍ତ୍ରୀ ଏସବୁ କହୁଥିବା ସମୟରେ ଗୋଟେ ଚାପୁଡ଼ା ମାରିବାର ଶବ୍ଦ ଶୁଣାଗଲା, କମଳୀ ଏମିତି ଧକେଇ ଧକେଇ କାନ୍ଦୁଥିଲା ଯେମିତି ତା' ଚମଡ଼ା କିଏ ଉତାରି ଦେଉଚି ।

ଘର ଭିତରକୁ ପଶିଗଲା ପରେ ଓକିଲବାବୁଙ୍କର କର୍କଶ ଧ୍ୱନି, କାନରେ ପଡ଼ିଲା ''ଏଇଥି ପାଇଁ ଭଗବାନ୍ ତୋତେ ଅପୁତ୍ରିକ କରଛନ୍ତି'', ନିର୍ଦ୍ଦୟୀ !''

'ମୁଁ ଅପୁତ୍ରିକ ତ !' ଓକିଲଙ୍କ ସ୍ତ୍ରୀ ଖୁବ୍ ରାଗରେ କହିଲେ । ଯେମିତି ଏ କଥା ତାଙ୍କୁ ଗଭୀର ଭାବରେ ଆଘାତ ଦେଇଥିଲା... କହୁ କହୁ ସେ କାନ୍ଦି ଉଠିଲେ । ଆଉ ନିଜର ମୁହଁରେ କାନି ଢାକି ଭିତର ଘରକୁ ଚାଲିଗଲେ । ମୋତେ ଦେଖିବା ମାତ୍ରେ କମଳୀ ଦୟାର ପାତ୍ରୀ ହେବା ପାଇଁ ଭୋ ଭୋ ହେଇ କାନ୍ଦି ପକେଇଲା । ଓକିଲବାବୁଙ୍କ ଶରୀରରେ ବି କରୁଣା ଓ ଦୟାର୍ଦ୍ର ହେବାର ଭାବ ଉକୁଟି ଉଠିଲା । ଦଶବର୍ଷୀୟା କମଳୀ ମାଡ଼ ଖାଇଥିବା ଗାଲରେ ହାତ ମାରିମାରି ଗୋଟେ କୋଣକୁ ଘୁଞ୍ଚିଗଲା, ମାଡ଼ ଖାଇ ତା' ଗାଲ ଫୁଲି ଯାଇଥିଲା । ବାଲି ଉପରେ ଲାଖି ରହିଥିବା ଲହରୀର ଚିହ୍ନ ଭଳି କମଳୀର ଶରୀରରେ ମାଡ଼ର ନମୁନା ଥିଲା ବେଶ୍ ସ୍ପଷ୍ଟ ।

ଓକିଲଙ୍କ ସ୍ତ୍ରୀ ଭିତରକୁ ଗଲାପରେ କମଳୀ ଚାଲିଗଲା ଓ ନିଜ ମାଆକୁ ଡାକିଆଣିଲା । ଆସୁ ଆସୁ ସେ ପାଟି କରିବା ଆରମ୍ଭ କରିଦେଲା 'ଏମିତି ମାଡ଼ କିଏ ମାରଚି ।'

ମୋ ଛୁଆ ଆଖିରେ ରକ୍ତ ଜମିଯାଇଚି । ଯଦି ପ୍ଲେଟ ଭାଙ୍ଗିଗଲା ଆମ ପାଉଣାରୁ କାଟି ଦେଇଥାଆନ୍ତ । ନିଜର ଛୁଆ ଥିଲେ ସିନା ମନରେ କଷ୍ଟ ହେଇଥାଆନ୍ତା ।

"ଦିନସାରା ଏଇଠି ରହିବ, ଖାଇବ, ପିଇବ, ଆଉ ଲୋକସାନ୍ କଲାବେଳକୁ ମାଡ଼ ହେବନି, କ'ଣ ପୂଜା କରାଯିବ ?'' ଓକିଲଙ୍କ ସ୍ତ୍ରୀ ଝାଡ଼ିହେଇ କହଲେ । କମଳୀର ମା' ଏଣୁ ତେଣୁ କହି ଚାଲିଗଲେ ।

'ବେଇମାନ୍, କାମ ଛାଡ଼ିଦେଲେ ଦେଉ,' ନିଜ କଥା ଓ ସ୍ୱାଭିମାନକୁ ନେଇ ଓକିଲଙ୍କ ସ୍ତ୍ରୀ ବି ଘର ଭିତରକୁ ପଶିଗଲେ ।

ଘରର ବାତାବରଣ ଖୁବ୍ ଖରାପ ଦେଖି ମୁଁ ପଛକୁ ଫେରିଆସିଲି... ମୁଁ ବାହାରିଆସିବା ମାତ୍ରେ ଲୋକମାନଙ୍କ ମୁହଁରେ ପୁଣି ସେଇ ପୂର୍ବ ପ୍ରକାରର ଉପହାସ ଦେଖାଗଲା । ମୋ ଭରାକ୍ରାନ୍ତ ମନଭିତରେ ଏକ ପ୍ରଚଣ୍ଡ ଉଦାସ ଭାବନା ଆସିଲା । ଏକ ବିଚିତ୍ର ପ୍ରକାରର ଘୃଣା ଓ

ଅପମାନର ଜ୍ୱଳନ ଅନୁଭବ କରି ମୁଁ ମୋ ରାସ୍ତାରେ ଚାଲିଲି ।

ବହୁତ ଦିନ ଧରି ପୁଣି ସେଠାକୁ ଗଲିନି । ଇଚ୍ଛାହେଲେ ପୁଣି ମୁଁ ଭାବୁଥିଲ ଯେ ସେଠାରେ ମୋର କାମ କ'ଣ ? କିନ୍ତୁ କାହିଁକି କେଜାଣି ବାରମ୍ୱାର ସେଠାକୁ ଯିବାକୁ ଭାରି ଇଚ୍ଛା ହେଉଥିଲା । ଶେଷରେ ମାସକ ପରେ ମୁଁ ଗଲି ।

ଘରେ ପହଞ୍ଚି ଦେଖିଲି ଓକିଲଙ୍କ ସ୍ତ୍ରୀ ଏକ ନୂଆ ବୁଣା ହେଇଥିବା ସ୍ୱେଟର୍‌ରେ ବୋତାମ ଲଗାଉଥିଲେ । ମୋତେ ଦେଖିଲାମାତ୍ରେ କହିଲେ, ''ଆସ ପ୍ରକାଶ, ଆସ, ଆଜି ସକାଳେ ତୁମକଥା ମନେ ପକାଉଥିଲି । କିଛିମାସ ହେଲା ମୁଁ ସବୁକିଛି ଭୁଲିଗଲିଣି । ଏଇ ଲିଲି ଆସିଚି, ମୋ ଝିଆରୀ... ଖୁବ୍ ଦୁଷ୍ଟ, ଆଉ କଥା କହୁଚି ଯେମିତି ମେସିନ୍... ହଁ... ତା'ଠାରୁ ଗୀତ ଶୁଣିବ କି ? ବହୁତ ଗୀତ ମନେ ରଖିଚି, ସାରାଦିନ ପ୍ରଜାପତି ଭଳି ଉଡ଼ିବୁଲୁଚି... ଏକା ନିଃଶ୍ୱାସକେ ଏସବୁ କଥା କହି ସେ ଲିଲିକୁ ଡାକିଲେ । ଆଜି ତାଙ୍କ ମୁଖମଣ୍ଡଳରେ ଥିଲା ଏକ ସୁନ୍ଦର ଉଜ୍ଜ୍ୱଳତା ଓ ଆନନ୍ଦର ଭାବନା ଯେମିତି ତାଙ୍କୁ ବୟସରେ କିଛବର୍ଷ ପଛକୁ ଫେରେଇ ନେଇଥିଲା । ସେଇଠୁ ଲିଲି ଡେଇଁ ଡେଇଁ ଆସି ପହଞ୍ଚିଲା । ନିରୀହ ଚେହେରା, କୁଞ୍ଚିକୁଞ୍ଚିଆ ବାଳରେ ରଙ୍ଗୀନ୍ ରିବନ୍ । ତୁଳାଭଳି ମୁଲାୟମ୍ ପତଳା ପତଳା ହାତ ଆଉ ଚମ୍ପାକଢ଼ି ଭଳି ଅଙ୍ଗୁଳିରେ ଗୋଲାପ ଫୁଲଭଳି ସୁନ୍ଦର ନଖ । ମୁଁ କଣ୍ଢେଇ ଭଳି ସୁନ୍ଦର ଲିଲିକୁ ଦେଖିବାରେ ଲାଗିଥିଲି । ହଠାତ୍ ଚୁଲ୍‌ବୁଲି ଲିଲି ପଚାରିଲା 'ଏ କିଏ ସେ ଖୁଡ଼ି ?'

''ତୁମର ସାନ କାକା... ହଁ ୟାଙ୍କୁ ଗୀତ ଶୁଣାଅ ଲିଲି,' ଓକିଲଙ୍କ ସ୍ତ୍ରୀ କହିଲେ । 'ମୋଲପେଡରେ ଲେଡ଼ିଓ ଅଛି କାକା, ସିନେମା ଗୀତ ଗାଉନି କାହିଁକି ?' ଲିଲି କୁରୁଳି ଉଠି କହିଲା । 'ଏ ବହୁତ ଖୁସିର କଥା ଲିଲି । ଠିକ୍ ଅଛି, ତୁମେ ଗୋଟେ ଭଲ ଗୀତ ଶୁଣାଅ, ମୁଁ ତୁମକୁ ବଢ଼ିଆ ଜିନିଷ ଦେବି ।' ମୁଁ କହିଲି । କିନ୍ତୁ ଲିଲି ଦଉଡ଼ି ଦଉଡ଼ି କହି କହି ଚାଲିଗ ଲା । 'ମୋ ପାଖଲେ ବହୁତ ଜିନିଷ ଅଛି । ସବୁ ମୋତେ କାକି ଦେଇଚନ୍ତି । ସବୁ ଆନୁଚି ଦେଖେଇବି ।' ଦି ମିନିଟ୍ ଭିତରେ ଗୋଟେ ବାକ୍ସରେ ଗୁଡ଼ାଏ ଜିନିଷ ଧରି ସେଠାରେ ଆସି ପହଞ୍ଚିଗଲା । 'ଏଇଟା ବନ୍ଧୁକ ଓ ମୋଟଲ୍ ମୋ ପାଖରେ ଅଛି, ଆଉ ଆଉ ଏ କନ୍ଦେଇ... ଏଇଟା ତା' ଗଦି... ଆଉ ଦେଖେଇବି ?... କହି କହ ଦଉଡ଼ି ପଳେଇଲା ଆଉ ପୁଣି ଆସିଲା ବେଳକୁ ଗୋଟେ ବିଲେଇଛୁଆକୁ କାଖରେ ଜାକି ଧରିଥିଲା ।

ତାକୁ ଦେଖିମା ମାତ୍ରେ ଓକିଲଙ୍କ ସ୍ତ୍ରୀ ଚିତ୍କାର କଲେ ''ଦେଖ୍, ତୋ ଦେହରେ ଯେମିତି ବିଲେଇ ପଞ୍ଝା ନ ମାରେ ।''

'ମୋତେ ମାଲେନା'... ଲିଲି ତା ଖୁଡ଼ୀଙ୍କୁ ବୁଝେଇଦେଇ କହିଲା ଯେମିତି- ''ଏ ଦୁଧ ପିଏ... କାକା ମୋ ପାଇଁ ଏଇଟା ଆନିଚନ୍ତି ।' ଏହା କହି ସେ ନାଚି ନାଚି ଗଲାବେଳେ ଓକିଲଙ୍କ ଘରଣୀ ସେଇ ସୁନ୍ଦର କଣ୍ଢେଇଟିକୁ ଲୋଭାତୁର ଦୃଷ୍ଟିରେ ଚାହିଁ ରହିଥିଲେ । ବିଲେଇ ଛାଟିପିଟି ହେଲା ଯେମିତି ଓକିଲଙ୍କ ସ୍ତ୍ରୀ ଲିଲିକୁ ବୁଝେଇ ସୁଝେଇ ବିଲେଇ ଛୁଆକୁ କୋଳକୁ ନେଲେ ।

ମଝିରେ ମଝିରେ ତାଙ୍କ ଓଠରେ ସ୍ମିତହାସ୍ୟ ଫୁଟି ଉଠୁଥିଲା ଆଉ ଲିଲି ନିଜ କାମରେ ବ୍ୟସ୍ତଥିଲା । ଲିଲି କଣେଇକୁ ବସେଇ ଶାଢ଼ୀ ପିନ୍ଧାଉଥିଲା... ଓକିଲଙ୍କ ଘରଣୀ ପୁଷିକୁ ମେଜ୍ ଉପରେ ବସେଇ ଲିଲିକୁ ଖୁବ୍ ଆନନ୍ଦ ସହକାରେ ଚୁମିନେଲେ । ଲିଲି ନିଜ ଗାଲକୁ ପୋଛି ତଳକୁ ଆସି ଦୌଡ଼ି ପଳାଇଲା ଆଉ ସେ ତାକୁ ଅପଲକ ନୟନରେ ଅନେଇ ରହିଥିଲେ । କହିଲେ 'ଏକ୍‌ଲା ଭାରି ଖରାପ ଲାଗୁଚି । ଘରେ ପିଲାଟିଏ ଥିଲେ ଜଣାପଡ଼େନା ଦିନଟିଏ କେତେଶୀଘ୍ର ବିତିଯାଏ...

'ଲିଲି ଖୁବ୍ ସୁନ୍ଦର ଝିଅଟେ ନୁହଁ ?' ମୁଁ ତାଙ୍କ ଖୁସିରେ ଆଉ କିଛି ଆନନ୍ଦ ଯୋଡ଼ିଦେବାକୁ ଚାହିଁଲି । ତାଙ୍କ ଦୃଷ୍ଟିରେ ଅଭୂତପୂର୍ବ ସ୍ନିଗ୍ଧତାର ଝଲକ । ତାଙ୍କର ମୁଖମଣ୍ଡଳର ସମସ୍ତ କଠୋର ରେଖାମାନ ଯେମିତି ଲୁପ୍ତ ହେଇଯାଇଥିଲେ ଏବଂ ତାଙ୍କ ଉଜ୍ଜ୍ୱଳ ମୁଖମଣ୍ଡଳରେ ବାତ୍ସଲ୍ୟର ମମତା ଝଲ୍‌ମଲ୍ ହେଉଥିଲା ।

ଜାଣେନା ଯା' ଭିତରେ ପୁଷି କେଉଁଠୁ ଆସି ମୋ ଗୋଡ଼ରେ ଘସିହେବାରେ ଲାଗିଲା । ମୁଁ ହଠାତ୍ ଗୋଡ଼ କାଢ଼ିନେବାରୁ ସେ ତଳେ ପଡ଼ିଗଲା । ଖୁବ୍ ସ୍ଫୁର୍ତ୍ତିର ସହ ଓକିଲଙ୍କ ଘରଣୀ ତାକୁ ଉଠେଇନେଇ କହିଲେ ''ଏ ବିଲେଇଟି ବହୁତ ଭଲ । ବହୁତ ଚାଲାକ୍, କେବଳ ଦୁଧ ପିଏ । ଆଜିଯାଏ କେବେ ବି କିଛି କ୍ଷତି କରିନି... ସମସ୍ତଙ୍କ କୋଠରୀରେ ଆରାମରେ ବୁଲେ...'' ଆଉ ଖୁବ୍ ସ୍ନେହରେ ପୁସିର ମଖମଲି କାନକୁ ସାଉଁଳେଇବାରେ ଲାଗିଲେ ।

ମୁଁ ଲିଲି ପାଖକୁ ଗଲି । ମୋତେ ଦେଖିବା ମାତ୍ରେ ସେ କହିଲା, ''ଦେଖ ଏ ମୋର ପୁଚିଲ ବିଛଣା, ଖୁଲି ଏଥିରେ ତୁଲା ପୁଳେଇ ଲେଶମ କପଲାରେ ଥିଲେଇ କଲିଚନ୍ତି ।'' ସେଇ ଛୋଟ ପୁଷି କଥା ସମସ୍ତଙ୍କ ମନରେ ଥିଲା । ଓକିଲବାବୁ ତ ପୁଷିକୁ ଲିଲି ପାଇଁ ଆଣିଥିଲେ । ଆଉ ଲିଲି ସେଇ ପୁଷିକୁ କାଖେଇ ବୁଲୁଥିଲା ଚାରିଆଡ଼େ, ଆଉ ଖାସ୍ ସେଇଥିପାଇଁ ଓକିଲଙ୍କ ଘରଣୀ ଏ ଦୁହିଁଙ୍କୁ ଦେଖି ଖୁବ୍ ଆନନ୍ଦିତ ହେଉଥିଲେ । ସେଇଥିପାଇଁ ସେ ପୁଷି ଥିଲା ଏତେ ବୁଦ୍ଧିମାନ୍ ଆଉ ସୁନ୍ଦର... ଓକିଲଙ୍କ ଘରଣୀ ଗୋଟେ ସଦ୍ୟଜାତ ଶିଶୁଭଳି ତା'ର ସେବା କରୁଥିଲେ । ତାକୁ ଗେଲ କରୁଥିଲେ... ସାଉଁଳାଉଥିଲେ... ଗାଧୋଇ ଦେଉଥିଲେ... ତା'ର ନଖ ସଫା କରୁଥିଲେ ଆଉ କୋଳରେ ବସେଇ ଆଦର କରୁଥିଲେ । ବିଲେଇକୁ ମୁହଁ ପାଖରେ ଧରି ଆଖିକୁ ଆଖି ମିଳେଇ ବାତ୍ସଲ୍ୟ ସ୍ନେହରେ ମଗ୍ନ ରହୁଥିଲେ । ଆଉ ଲିଲି ଆସି ତାକୁ ଟେବୁଲ୍ ଉପରେ ବସେଇ ଖୁବ୍ ଆଦର କରୁଥିଲା ।

ଲିଲି ମୋ ସହ ବହୁ ସମୟ ଲାଖି ରହିଲା । ଶେଷରେ ଲିଲିର ଏଇ କଥାରେ ସମ୍ମତ ହେଇ ଘରକୁ ଫେରିଲି ଯେ, ତା' ପାଇଁ ଛୋଟ ଛୋଟ ଘୁଙ୍ଗୁର କିଣିଆଣି ଦେବି । ସେ ସମୟରେ ଓକିଲଙ୍କ ଘରଣୀ ନିଜର ଦୁଇ ଛୁଆ ଲିଲି ଓ ପୁଷିଙ୍କ ସହ ବ୍ୟସ୍ତ ଥିଲେ... ତାଙ୍କ ଭିତରେ ଯେମିତି ଗୋଟେ ନୂଆ ଜୀବନ ଫେରି ଆସିଥିଲା । କଥା କଥାକେ ସେ ଖୁବ୍ ଉନ୍ମୁକ୍ତ ରୂପରେ ହସି ଉଠୁଥିଲେ... ତାଙ୍କର ଖୁସି ଓ ଆନନ୍ଦ ଦେଖି ମୋତେ ବହୁତ ସନ୍ତୋଷ ମିଳିଥିଲା ।। ମୁଁ କ'ଣ ସବୁ ଭାବିନେଇ ଚାଲି ଯାଇଥିଲି ମୋତେ ଲାଗୁଥିଲା ଯେ ଏ ଆତ୍ମୀୟତା ଓ ଆନନ୍ଦ ହିଁ

ମୋ ଧ୍ୟାନଭଙ୍ଗ କରିଦେଇଛି । ସେଦିନର ସେଇ ହସ... କେତେ କେତେ ଲାଗୁଥିଲା ଆମର ଏଇ ସମ୍ମିଳିତ ହସ ମଧ୍ୟରେ ଏକ କୁତ୍ସିତ ଓ ଗାମ୍ଭୀର୍ଯ୍ୟ ଅର୍ଥ ଲୁଚି ରହିଛି । ମୁଁ ଫେରିପଡ଼ି ଚାଲିଗଲି କିନ୍ତୁ ସେଇ ହସ ମୋ କାନର ପର୍ଦ୍ଦା ଭିତରେ ଯେମିତି ବାରମ୍ବାର ଅନୁରଣିତ ହେଇ ଚାଲିଥିଲା ।।

ଏହା ଭିତରେ ମୁଁ ବାହାରକୁ ଚାଲିଗଲି ଏବଂ ଲିଲିର ପୁଷି ପାଇଁ ଘୁଙ୍ଗୁର ଆଣିବା ଅନୁରୋଧ ମୁଁ ପୂରଣ କରିପାରିଲିନି । ପୂରା ଗୋଟେ ମାସ ବିତିଗଲା । ନିଜର ଅଭ୍ୟାସ ଓ ପ୍ରକୃତି ଅନୁସାରେ ସେଠାକୁ ଯିବାପାଇଁ ପୁଣି ପ୍ରସ୍ତୁତ ହେଲି ଓ ଲିଲିର ପୁଷି ନିମନ୍ତେ ବଜାରରୁ ଘୁଙ୍ଗୁର କଣି ସିଧା ଆସି ଓକିଲଙ୍କ ଘରେ ପହଞ୍ଚିଲି । ଓକିଲଙ୍କ ଘରଣୀ ବାହାର ଘରେ ଥିଲେ । ମୋତେ ଦେଖି ସେ ବଶେଷ ଖୁସି ହେଲେନି । ପାଖ ଚେୟାରରେ ନିଜକୁ ନିଜେ ବସି ଲିଲି ବିଷୟରେ ପଚାରିବାରୁ କହିଲେ 'ସେ ତା' ମାଆଙ୍କ ପାଖକୁ ଚାଲିଯାଇଚି ।' ତାକୁ ଏଠାରେ ଭଲ ଲାଗିଲାନି ।

ଓକିଲଙ୍କ ସ୍ତ୍ରୀ କହିଚାଲିଲେ ''ପର ଛୁଆ ପରର । ଯେତେ ଆଦର କର ପଛେ, ରକ୍ତ ତ ଅଲଗା । ଲିଲିର ବାପା ନେବାକୁ ଆସିଥିଲେ, ଲିଲି କ'ଣ କହିଲା ଜାଣନ୍ତି ?'' ତାଙ୍କ ଚେହେରାରେ ବିଷାଦ ଓ କରୁଣାର ରେଖାମାନ ଉକୁଟି ଉଠିଥିଲା । ନିଜକୁ ନିଜେ ସେ କହିଥିଲା ''ମୁଁ କୁଆଡ଼େ ତା' ମାଆ ପର ନୁହଁ... ଛୋଟ ଛୁଆ ସିନା ଦେଖିବାକୁ... କିନ୍ତୁ କଥାବାର୍ତ୍ତା କରେ ପୋଖତ ବୁଢ଼ୀଟିଏ ଭଳି... ତୁମେ ତ ଦେଖୁଚ ପ୍ରକାଶ, ମୁଁ ତା' ପାଇଁ କ'ଣ ନ କରିଚି । ତା' ପାଇଁ କେତେ ଜିନିଷ ଆଣି ରଖିଥିଲି...'' ପୁଣି ସ୍ୱଗତୋକ୍ତି କରି କହିଲେ- ''ସେଠିକା ଅପେକ୍ଷା ଏଠାରେ ମୁଁ କୋଡ଼ିଏ ଗୁଣା କଲି । କିନ୍ତୁ ସେ ଛୁଆର ମନ ମାନିଲାନି । ଦି ଦିନକାଳ କାନ୍ଦିବାରେ ଲାଗିଲା । ଶେଷରେ ତା' ବାପାଙ୍କୁ ଟେଲିଗ୍ରାମ କରାଗଲା । ଏଇ ସପ୍ତାହେ ଆଗରୁ ତା' ବାପା ଆସି ନେଇଗଲେ । କହି କହି ତାଙ୍କ ଗଳା ଯେମିତି ଶୁଖି ଆସିଲା । ଆଉ ଏକଲୟରେ କବାଟ ଆଡ଼କୁ ସେ ଅନେଇ ରହିଥିଲେ । ତାଙ୍କ ଓଠଯୋଡ଼ିକ ଧୀରେ ଧୀରେ ଅସ୍ପଷ୍ଟ ଭାବେ କ'ଣ କହୁଥିଲେ... ଆଉ ଆଖିରେ ଜକେଇ ଆସିଥିଲା ଲୁହର ଶ୍ରାବଣ...

ଘର ବେଶ୍ ଶୂନ୍‌ଶାନ୍ ଲାଗୁଥିଲା ଏବଂ ଓକିଲଙ୍କ ଘରଣୀ ଚୁପ୍ ହେଇଯିବା ହେତୁ ଘରର ବାତାବରଣ ହେଇଯାଇଥିଲା ନୀରବ ନିଷ୍ପନ୍ଦ ।। ସେଉଠୁ ବିଲେଇ ଚୁପ୍‌ଚାପ୍ ଏଆଡ଼େ ସେଆଡ଼େ ଅନେଇ ଅନେଇ ପଶିଆସିଲା । ମୁଁ ପକେଟରୁ ଘୁଙ୍ଗୁର କାଢ଼ିବାରୁ ବାଜିଉଠିଲା । ଘୁଙ୍ଗୁରର ଶବ୍ଦ ଶୁଣି ଘୁରି ବୁଲୁଥିବା ବିଲେଇକୁ ଚାହିଁ ଓକିଲଙ୍କ ଘରଣୀ କହିଲେ- ''ଏ ଘୁଙ୍ଗୁର ଆଉ କ'ଣ ହେବ ? ମୁଁ ଏବେ ଏ ବିଲେଇକୁ ଘରୁ ବାହାର କରିଦେବି ବୋଲି ଭାବିଚି । ଏତେ କ୍ଷତି ଆମର କଲାଣି ଯେ ସେକଥା କହିହେବନି । ସେଦିନ ଗ୍ଲାସ ଭାଙ୍ଗି ପୂରା ସେଟ୍‌ଟା ଖରାପ କରିଦେଲା... କ୍ଷୀର ଲୁଚେଇ ଚୁରେଇ ପିଇଯାଉଚି ଆଉ ଗତକାଲି ହାରାମ୍‌ଜାଦୀ ମୋ ହାତକୁ ନଖମାରି ରାମ୍ପୁଡ଼ି ଦେଇଚି ।'' କହି କହି ସେ ପୁଷିକୁ ଗୋଡ଼ରେ ଗୋଟେ କୋଣକୁ ଠେଲିଦେଲେ । ମୁଁ ଚୁପ୍‌ଚାପ୍ ଥିଲି । ସେ ଖୁବ୍ ସହଜ ଭାବରେ କହିଲେ- ''ଏହାକୁ ଅଖାରେ ବାନ୍ଧି ତୁମେ ଦୂରରେ ଛାଡ଼ିଦେଇଆସ ।'' ମୁଁ ଏଇ ବିଲେଇ ପାଇଁ ଖୁବ୍ ହଇରାଣ ହେଲିଣି ।

ପାଖକୁ ଆସିଯାଇଥିବା ପୁଷିକୁ ଗୋଇଠାଟେ ମାରି ପୁଣି ଦୂରେଇ ଦେଲେ ।

କ୍ଷଣକ ପରେ ଚିନିଥିବା ପାତ୍ର ପଡ଼ିଯିବାର ଶବ୍ଦ ହେଲା । ଓକିଲଙ୍କ ଘରଣୀ ସେଠାକୁ ଦଉଡ଼ିଲେ । ଯାଇ ଦେଖିଲେ ତାହା ଭାଙ୍ଗି ଯାଇଥିଲା ଆଉ ପୁସି ଚାରିଆଡ଼କୁ ମୁହଁ ଘୂରେଇ ଆଉ କ'ଣ ଅଛି ଜାଣିବାକୁ ଶୁଙ୍ଘି ଚାଲିଥିଲା । ଓକିଲଙ୍କ ସ୍ତ୍ରୀ ଜୋର୍‌ରେ ବିଲେଇକୁ ଗୋଟେ ପାହାର ଦେଲେ । ପୁସି ସେଇଠି ନିଶ୍ଚଳ ହେଇ ପଡ଼ି ରହିଲା । କ୍ଷଣକ ପରେ ତା'ର ହୋସ୍ ଆସିଲା ଓ ସେ ତୀର ବେଗରେ ସେଠାରୁ ଦଉଡ଼ି ପଳେଇଲା । ତା' ମାଲିକାଣୀ ଦାନ୍ତ କାମୁଡ଼ି ଚିତ୍କାର କରୁଥିଲେ ''ରହ ହାରାମଜାଦୀ... ଆଜି ତୋ ମୁହଁ କଳା କରୁଚି ।''

ମୁଁ ଖୁବ୍ ବିରକ୍ତ ହେଇଯାଇଥିଲି । ସେଠାରେ ବେଶୀ ସମୟ ନ ରହି ଚାଲି ଆସିଲି । ଆଜି ସେଇ ଗଳିଟି ଥିଲା ବେଶ୍ ନିଛାଟିଆ । ବାରମ୍ବାର ଓକିଲଙ୍କ ଘରଣୀ ବିଲେଇକୁ ପିଟିବା କଥା ଭାବୁଥିଲି । କେତେ ଜୋର୍‌ରେ ପିଟିଥିଲେ ସତେ ! ତାଙ୍କ ସୁନ୍ଦର ଓଠ ରାଗିଲେ କେତେ କୁତ୍ସିତ ଦିଶେ ସତେ ? ଆଖି ଦୁଇଟି ଛୋଟ ଛୋଟ କଉଡ଼ି ଭଳି ଖୁବ୍ ଅବାଗିଆ ଦିଶେ... ଅନ୍ତରର ଭାବନା ସହ ମଣିଷର ଚେହେରା କେତେ ବଦଳିଯାଏ ସତେ ?

ପୁଣି ଗୋଟେ ସପ୍ତାହ ସେଠାକୁ ଯାଇପାରିଲିନି । କେତେକ କାମରେ ବ୍ୟସ୍ତ ରହିଲି । ଓକିଲବାବୁଙ୍କର ବି ବାହାରକୁ କୁଆଡ଼େ ଯିବାର ଥିଲା, ହୁଏତ ଚାଲି ଯାଇଥିବେ, ଆଉ ଯାଇ ନଥିଲେ ତାଙ୍କ ସହ ଭେଟ ହେଇଯିବ, ଭାବି ମୁଁ ଦୁଆର ଦେଇ ଭିତରକୁ ପଶିଲା ବେଳକୁ ଦେଖିଲି... ସାମ୍ନାରେ ଓକିଲଙ୍କ ଘରଣୀ ବସିଥିଲେ ଓ ବିଲେଇର ଗୋଟେ ଛୁଆକୁ କୋଳରେ ବସେଇ ଆଦରରେ ତାକୁ ସାଉଁଳାଉଥିଲେ । ମୁଁ ପଶିଯାଇ କହିଲି, ''ମୁଁ ଭାବୁଚି ଆପଣଙ୍କର ବ୍ୟସ୍ତତା ବର୍ତ୍ତମାନ ଦି'ଗୁଣା ହେଇଯାଇଥିବ... ଏ ପୁସିର ଛୁଆ ପ୍ରାୟ... ହଁ, ମୁଁ ଏହା ନାଁ ରଖିଚି ରମ୍ପି... କିନ୍ତୁ... ବିଚାରୀ ପୁସି... କହିଲାବେଳକୁ ତାଙ୍କ ଶବ୍ଦ ଅସ୍ପଷ୍ଟ ହେଇ ଆସିଥିଲା । ପେଟ ଭିତରୁ ଯେମିତି ହାଲୁକା ହାଲୁକା ପବନ ବାହାରି ଆସୁଥିଲା । ଆଖି ଖୁବ୍ ତରଳ ହେଇ ଆସିଥିଲା ତଥା ବାଷ୍ପାକୁଳ କଣ୍ଠରେ ସେ କହିଲେ, ''ପୁସି ମରିଗଲା । ଯେଉଁଦିନ ତୁମେ ଆସିଥିଲ ଆଉ ମୁଁ ତାକୁ ବାଡ଼ିରେ ପିଟିଥିଲି, ସେବେଠାରୁ ତିନି ଚାରିଦିନ ଯାଏ ତା'ର ଦେଖା ନଥିଲା । ମୁଁ ଭାବିଲି କେଉଁଠିକୁ ପଳେଇ ଯାଇଚି ପ୍ରାୟ । କିନ୍ତୁ ଚାରି ପାଞ୍ଚଦିନ ପରେ ସେ ଏଇ ଛୁଆଟିକୁ ମୁହଁରେ ଧରି ଏଠାକୁ ଆସିଥିଲା... ପୁସି ଖୁବ୍ ଦୁର୍ବଳ ହେଇଯାଇଥିଲା । ଏହାକୁ ମୋ ସାମ୍ନାରେ ରଖି ଖୁବ୍ ଜୋର୍‌ରେ ଧକଉଥିଲା, ଆଉ ଥର ଥର ପାଦରେ ଧକେଇ ଧକେଇ ବାହାରକୁ ଚାଲି ଯାଇଥିଲା... ସେଇଠି ଗଳିରେ ଛକିଥିବା କୁକୁରମାନେ ତାକୁ ଗୋଡ଼େଇ ଗୋଡ଼େଇ କାମୁଡ଼ି ଧରି ଖଣ୍ଡ ଖଣ୍ଡ କରି ଦେଇଥିଲେ... ଆଉ ତାଙ୍କ ଆଖିରୁ ଧାର ଧାର ଲୁହ ବହି ଆସିଥିଲା ଗଣ୍ଡଦେଶ ଦେଇ ।

ଏହା ମଧ୍ୟରେ ବିଲେଇ ଛୁଆ ରମ୍ପି ମାଲିକାଣୀଙ୍କ କୋଳରୁ ଓହ୍ଲେଇ ଧୀରେ ଧୀରେ ଚାଲି ଚାଲି ବାହାରକୁ ଚାଲିଯାଇଥିଲା । ଆମେ କଥାବାର୍ତ୍ତା ହେବା ଭିତରେ ତା'ର କ୍ଷୀଣ ଚିତ୍କାର

ଶୁଣାଗଲା । ମୁଁ ଆସିଲାବେଳେ ଦୁଆର ଖୋଲା ରଖିଦେଇ ଆସିଥିଲି ଆଉ ଗଳିର କୁକୁରମାନେ ତା' ତଣ୍ଟି ଚିପି ଆକ୍ରମଣ ଆରମ୍ଭ କରିଦେଇଥିଲେ । ଓକିଲଙ୍କ ସ୍ତ୍ରୀ ଏହାଦେଖି ବହୁତ ଜୋର୍‌ରେ ଚିତ୍କାର କରି ଉଠିଲେ 'ପ୍ରଭୁ, ମୋ ରମ୍ଭିକୁ ମାରି ପକେଇଲେ ହେ । ଜଲଦି ଦଉଡ଼ ପ୍ରକାଶ-ନହେଲେ ଝୁଣି ପକେଇବେ... ବିଚାରୀକୁ । ତାଙ୍କ ପ୍ରଚଣ୍ଡ ଚିତ୍କାର ଶୁଣି ମୁଁ କୁକୁର ପଛରେ ପାଗଳପ୍ରାୟ ଧାଇଁବାକୁ ଚେଷ୍ଟାକଲି । କିନ୍ତୁ କୁକୁର ସେତେବେଳକୁ ରମ୍ଭିକୁ ନେଇ କୁଆଡ଼େ ନିଖୋଜ ହେଇଯାଇଥିଲା ।

ଫେରି ଆସିଲାବେଳକୁ ଓକିଲଙ୍କର ଘରଣୀଙ୍କ ଆଖିରେ ଲୁହର ବନ୍ୟା । ମୋତେ ଦେଖିବା ମାତ୍ରେ ସେ କହିଲେ, 'ଠିଆହେଇ ଦେଖୁଚ କ'ଣ ? ସେଠି ମସ୍‌ଜିଦ୍ ପାଖରେ ଯେଉଁଠି ଅଳିଆ ଗଦା ଅଛି, ସେଠାକୁ ଯାଇ ଦେଖ । କୁକୁର ସେଇଠି ଥିବ । ରମ୍ଭି ବଞ୍ଚିଯାଇପାରେ । ତାଙ୍କ ହାତରେ କମ୍ପନ ଓ ଆଖିରୁ ବୁନ୍ଦା ବୁନ୍ଦା ଲୁହ ବର୍ଷାର ପରିସ୍ଥିତି ।

ମୁଁ ସବୁଆଡ଼େ ଖୋଜିଦେଇ ଆସିଲି । କିନ୍ତୁ ରମ୍ଭି ମିଳିଲାନି । ଓକିଲଙ୍କ ସ୍ତ୍ରୀ ପାଗଳିଙ୍କ ଭଳି ଦୁଆର ପାଖରେ ଠିଆ ହେଇଥିଲେ । ମୋତେ ଖାଲି ହାତରେ ଫେରିବା ଦେଖି ତାଙ୍କର ବେଦନାର ବନ୍ଧ ଭାଙ୍ଗିଗଲା ଯେମିତି । ମୁଁ ହାତରେ ଧରି ଧରି ତାଙ୍କୁ ଭିତରକୁ ନେଇଗଲି । କିନ୍ତୁ ସେ ବାରମ୍ବାର ଧକେଇ କାନ୍ଦୁଥିଲେ... 'ରମ୍ଭିକୁ କୁକୁରମାନେ ମାରି ଦେଇଥିବେ...''

ଓକିଲଙ୍କ ସ୍ତ୍ରୀ ଚୁପ୍ ହେଇଗଲେ ଓ ଘନେଇ ଆସୁଥିବା ସେଇ କଳାକଳା ରାତିର ଅନ୍ଧାରରେ ଚୁପ୍‌ଚାପ୍ ହେଇ ବସିଥିଲେ... ଲାଗୁଥିଲା ଯେମିତି ତାଙ୍କ ଚେହେରା ବଦଳିଯାଇଚି ଏକ ଅବୋଧ ଶିଶୁ ରୂପରେ... ଆଉ କେବେ ପ୍ରସବ ବେଦନାରେ ପୀଡ଼ିତ ମା'ର ଗର୍ବିତ ଚେହେରାରେ... ଆଉ ସେ ନୀରବରେ ବସି ଦୂର ଆକାଶକୁ ଚାହିଁ ରହିଥିଲେ... ଯେମିତି ସେଠି ଅନେକ ଆତ୍ମା ଓ ଛୋଟ ଛୋଟ ଶିଶୁମାନେ ଧଳା ଡେଣା ଲଗେଇ ଉଡ଼ି ଚାଲିଥିଲେ ।

ମୁଁ ବାତାବରଣକୁ ସାମାନ୍ୟ ହାଲ୍‌କା କରିବାକୁ ଯାଇ କହିଲି ''ଓକିଲବାବୁ, କେବେ ଆସିବେ ? ସେ ସେଇମିତି ଉଦାସୀନତାର ସହ କହିଲେ, ''ଘରେ ଏକା ଅଛି ବୋଲି ପଚାରୁଛ ତ ?... ତାଙ୍କର ଯେବେ ଆସିବାର କଥା ସେ ଆସିବେ... ମୁଁ ତ ସବୁବେଳେ ଏକା... ଯେତେବେଳେ ଘର ପରିପୂର୍ଣ୍ଣ ଥାଏ, ସେତେବେଳେ ବି ମୁଁ ଏକା ହିଁ ଥାଏ... ଏବେ ତୁମେ ଯାଅ, ବହୁତ ଡେରି ହେଲାଣି...

ଶେଷରେ ମୁଁ ଉଠି ଚାଲିଲି... ବସ୍ତିର ସେଇ ଦୋକାନରେ ପୁଣି ଆଲୋଚନା, ଥଟ୍ଟା ପରିହାସ ଶୁଣିପାରିଲି । ସେଇ ପରିହାସ ଏକ ମିଥ୍ୟା ପାପର ଆଭାସ କରାଉଥିଲା । ...ଯେମିତି କାହାର ସ୍ତ୍ରୀ ହେବା ବି ପାପ । ସେ ହସ ମୋ ମନ ଓ ମସ୍ତିଷ୍କରେ ବାରମ୍ବାର କୁଠାରାଘାତ କରୁଥିଲା... ଆଉ ଏକ ଏକାକୀତ୍ୱ ବି ମୋତେ ଖୁବ୍ ଯନ୍ତ୍ରଣା ଦେଉଥିଲା । ନାଁ ସେ ପରିହାସର ସମାପ୍ତି ହେଉଥିଲା, ନାଁ ସେଇ ନାରୀଟିର ଏକୁଟିଆପଣର... ନା ସେଇ ପ୍ରଲମ୍ବି ଯାଉଥିବା ରାତିର ଦୀର୍ଘତାର.... ।

# ଚାରି ମହାନଗରୀର ତାପମାତ୍ରା

ଓଃ...ବହୁତ ଗରମ । ଏଭଳି ଗରମ ଆଗରୁ କେବେ ହୋଇନି ... ।

କାହିଁ ଗରମ ... କେବଳ ତୁମ ଶରୀର ପାଲଟି ଯାଇଛି ଏକ ଆଗ୍ନେୟଗିରି ...

ତା' ମୁଣ୍ଡରେ ସବାର୍ ହୋଇ ସାରିଥିଲା ଗୋଲାପୀ ରଂଗର ଜୁଲୁଜୁଲିଆ ବିଜୁଳି ପୋକ .... କେବେ କେବେ ଦେଖାଦେଉଥିବା ଗୋଲାପିରଂଗର ରଂଗିନ ବିଜୁଳିପୋକ ... ଗୋଲ୍‌କୁଣ୍ଡା ୱାଇନ୍ ...

ସେ କହିଲା ... ନିଅ ଏ ରେଡ୍ ୱାଇନ୍ ଟିକିଏ ଚାଖିନିଅ ... ଖୁବ୍ ମସ୍ତ ...ବାଃ ଖୁବ୍ ବଢିଆ !... ସେ ଓଠରୁ କପ୍ ହଟେଇଲା । ସେ ରେଡ୍ ୱାଇନ୍‌ରେ ଭିଜିଯାଇଥିବା ଓଠକୁ ଧୀରେ ଧୀରେ ଚାଖିଲା ।

ଆସ୍ତେ ଆସ୍ତେ ସେ ତା' କମର ଉପରେ ହାତ

ରଖିଲା ... ତା'ର ସୁନ୍ଦର ପେଟ ଯେମିତି ଧୀରେ ଧୀରେ ମୁଲାୟମ୍ ହେଇଯାଉଥିଲା ... ସେ କହିଲା ... ରେଡ୍ ରମ୍ ...କଣ ବୁଝିପାରିଲନି ... ଲେଖିକି ଦିଅ ... ବୁଝିପାରିବ । କହି କହି ସେ ତା'ର ଅଧାଫୁଙ୍ଗୁଳା ପିଠି ଉପରେ ଶୋଇଯାଇ ହାତ ବଢେଇ ସାଇଡ୍ ଟେବୁଲ୍ରୁ କାଗଜ ଆଣିଲା ... ଲେଖିକି ଦିଅ ... ରେଡ୍ ରମ୍ । ସେ ଠିକ୍ ବୁଝିପାରିଲା ... ଧୀରେ ଧୀରେ ହସିଲା ମୁଲାୟମ୍ ଚାହାଣିରେ ।

ସୁନ୍ଦରୀ ହେବା ହିଁ ବିପଦକୁ ଟାଣିଆଣେ ...

ହଁ, ତୁମେ ତ ସୁନ୍ଦର !

ସେ ମୋତେ ନୁହେଁ, ମୋର ସୁନ୍ଦରୀ ହେବାକୁ ହିଁ ସନ୍ଦେହ କରନ୍ତି ।

ପୁଣି ସେଇ ରଂଗିନ୍ ବିଜୁଳିପୋକ ଦପ୍‌ଦପ୍ କଲା ।

ତୁମକୁ କଣ ମୋର ଗୋଟେପଟ ବ୍ରେଷ୍ଟ ସାନ ଲାଗେ ?

ସେ ହାତ ବୁଲେଇଲା, ଅନୁଭବ କରି କହିଲା, କିଏ କହିଲା ?

ସେ କହନ୍ତି, ବହୁତ ଥର ମୋତେ କହିଲେଣି ।

ହଁ ସିଲିକୋନ୍ ଡସଟ୍ କଲେ ଦୁଇଟି ଯାକ ସମାନ ହେଇଯିବ ... ଦେଖ ଏଇ ତଳପଟୁ ଅପରେସନ୍ କରାହୁଏ । ସାଧାରଣତଃ ସୋସାଇଟି ସାଇଜଠାରୁ ବ୍ରେଷ୍ଟ ବଡ ଲାଗିଲେ ସେଥିରୁ ଚର୍ବିର ଗୋଟେ ଲେୟାର୍ କାଢି ଦିଅନ୍ତି ...

ସେ ଗୋଡକୁ ଜାକିଦେଇ ବିଲେଇଭଳି ପଡିରହିଲା ...

ସୋସାଇଟି ସାଇଜ୍... ?

ହଁ ଯେମିତି ତୁମର ... । ବେଶ୍ ପରଫେକ୍ଟ ... ।

ଆହ ... ଆମନ୍ତ୍ରଣ ମୁଦ୍ରାରେ -

ସେ ବାହୁଖୋଲିଦେଲା ...କମ୍ ଟୁ ମି -

ସେ ତାକୁ ଆଲିଙ୍ଗନରେ ଜଡେଇ ଧରିଲା ।

କିସ୍‌ମିସ୍ ଏକ .... କିସ୍‌ମିସ୍ ଦୋ .....

ଘନଘନ ଚମକୁଥିଲା ଗୋଲାପୀ ବିଜୁଳି .....

ଆଇ ହେଭ୍ ଏ ବ୍ରେନ୍ ଫର୍ ବିଜନେସ୍, ଏଣ୍ଡ ବଡି ଫର୍ ସିନ୍...

ଓଃ... ଆଇ ରିୟଲି ଲଭ୍ ୟୁ ...

ତୁମ ଶରୀରରେ ଶହ ଶହ ଜ୍ୱାଳାମୁଖୀ ପ୍ରଜ୍ୱଳିତ ହେଇଉଠୁଛନ୍ତି...

କେତେ ଯେ ଘୋଡା ଦୌଡି ଚାଲିଛନ୍ତି ତୁମ ଶରୀରରେ ...

ଓଃ...ମ୍ମ୍ ... ଉମ୍...

ଏତେ ଜଲ୍‌ଦି କାହିଁକି ...

ଧୀରେ ଧୀରେ ମାଂସରେ ନିଆଁଲାଗୁଥିଲା ...

କେତେକ ଜାଗାରେ ଖୋଲିଯାଉଥିଲା ରେଶମୀ ରାସ୍ତା ...

ସେଇରାସ୍ତା ଯାହା ଫୋଲ୍ଡହେଇ ରହିଥିଲା କିଛିଦିନ ଧରି ...

ତୁମ ପୁରୁଷମାନଙ୍କର ମେଲ୍ ସୋସାଇଟି ମୋର ପସନ୍ଦ ନୁହଁ ।

କାହିଁକି ?

ପ୍ରତ୍ୟେକ ପୁରୁଷ ବିଛଣାକୁ ଟାଣିନେବାକୁ ଚାହାନ୍ତି ...

କିଂତୁ ପ୍ରତ୍ୟେକ ସ୍ତ୍ରୀ ବିଛଣାକୁ ... ବିଛଣାକୁ ଯିବା ଆଗରୁ ଚିନ୍ତାକରିଥାନ୍ତି ଯେ, ସେଠୁ ଆସିବା ପରେ ତାଙ୍କୁ କଣ ମିଳିବ...

ହେସ୍...

ରେଡ୍ ୱାଇନ୍...

ଓକେ ...

ଚାଖ, ଖୁବ୍ ଭଲ ଲାଗିବ...

ସେ ବେଶ୍ କିଛି ସମୟ ୱାଇନ୍‌ରେ ଭିଜିଯାଇଥିବା ଓଠକୁ ଚାଖିଲେ....ଯେମିତି ମଝିରେ ମଝିରେ ଲୁଚି ରହିଥିବା ଚଢେଇଟେ ଉଚ୍ଚାରୁଥିଲା "ରେଡ୍ ରମ୍"...

ଲେଖିକି ଦେଖ....

ସେ ଚମକି ଉଠୁଥିବା ବିଜୁଳିପୋକର ଗୋଲାପିରଂଗ ପୁଣି ଦେଖିଲା ... ଦୁଇ ବାହୁରେ ତାକୁ କାନ୍ଧଉପରକୁ ଭିଡିନେଲା ... ଓଠରେ ତା' ବେକରୁ କାନଯାଏ ଛୁଇଁଗଲା ... ହଠାତ୍ ସେ ସାମାନ୍ୟ ଢିଲା ହେଇଗଲା ... ଚମକି ପଡି ...

କଣ ହେଲା ?...

ଆୱାଜ୍ ଶୁଣୁଛୁ ତ...

କି ଆୱାଜ୍ ... ସେ ଶୁଣିବାକୁ ଚେଷ୍ଟାକଲା... କାହିଁ କିଛି ଆୱାଜ୍ ନାହିଁତ ... ହଁ !

ଏଇ ଆ ତ... ରେଡ୍ ରମ୍ ଲେଖିବିତ !

ରେଡ୍ ରମ୍ .. ନାଁ, କିଛି ଶବ୍ଦ ଶୁଣାଗଲା ... ସେ ପୁଣି ଡରିଗଲା,

ତୁମର କଣ ହେଲା ?

ମୁଁ କହୁଚି ନା କିଏ ଅଛି... ଶୁଣ... ଶବ୍ଦ ଶୁଣ...

କିଏ ହେଇଥିବ ବୋଲି ଭାବୁଚ ?

ତୁମ ସ୍ତ୍ରୀ ଯଦି ହେଇଥାଏ ?

ସେ ତ ଛୁଆପିଲାଙ୍କୁ ନେଇ ବାପଘରକୁ ଯାଇଚି... ଡୋଣ୍ଟ୍ ବି ସିଲି ... ଲେଖିବି ତ...

ତୁମେ କିଛି ଆୱାଜ୍ ଶୁଣିପାରୁନ ? ସେ ଚଦର ଘୋଡେଇ ହେଲା ।

କାହିଁ କିଛି ଶୁଭୁନି... କହି ସେ ଶୁଣିବାକୁ ଚେଷ୍ଟାକଲା । ତା'ର କିଛି ସନ୍ଦେହ ହେଲା -

ହଁ କିଛି ଗୋଟେ ଜଣାଯାଉଛି ...

କର, କିଛି ନୁହଁ, ଲାଗୁଛି ବା...

ସେହିକ୍ଷଣି ଖୁବ୍ ଧୀରେ ଠକ୍ ଠକ୍ ଶବ୍ଦହେଲା ...ହଁ କିଏ ଜଣେ ଖଟ୍ ଖଟ୍ କରୁଛି ...

ହଁ ଜଣାପଡୁଚି ତ ...

କିଏ ହେଇଥିବ ...

ତୁମେ ଚିନ୍ତାକର ... ଯିଏ ହେଇଥିଲେ ବି ବେଲ୍ ମାରିବା କଥା ...

ବେଲ୍ ବି ଖରାପ ହେଇଥାଇପାରେ ।

କିନ୍ତୁ ଏ ସମୟରେ କିଏ ଆସିବ ?

ସେଇଆ ତ !

ତୁମ ହଜ୍‌ବ୍ୟାଣ୍ଡ ହେଇଥିବେ । ତୁମେ ସ୍ୱାମୀଙ୍କର କରାଘାତ ଜାଣିପାରୁନ ? ନିଶ୍ଚିତ କେହି ହେଇଥିବେ । କହି କହି ସେ ୱାଇନ୍ ବୋତଲ୍ ଓ ପିଆଲାକୁ ଖଟତଳକୁ ଠେଲିଦେଲା । ଖଟ୍ ଖଟ୍ ଆହୁରି ବଢିଚାଲିଲା ।

ଆଉ କେହିବି ଭେଟିବାକୁ ଆସିଥାଇପାରନ୍ତି ।

ବର୍ତ୍ତମାନ ତ ଦୁଆର ଖୋଲିବାକୁ ହିଁ ହେବ ।

ତୁମେ ଯାଅ ଦେଖ ... ମୋତେ ଉଠିବାକୁ ସମୟ ଲାଗିବ ।

ଏ ତୁମ ହଜ୍‌ବ୍ୟାଣ୍ଡ ନିଶ୍ଚିତ ...

କାହିଁକି ? ଏ ହେଉଛି ତାଙ୍କ ଘର ... ସେ ଯେବେ ଚାହିଁବେ ଆସିପାରିବେ ।

ସେ ଗୋଟେ ସପ୍ତାହ ପୂର୍ବରୁ ଫେରିବେନି, ମୁଁ ଜାଣିଚି । ଯାଅନା, ଦୁଆର ଖୋଲ । ଯିଏ ବି ହେଉ, ନହେଲେ ଦୁଆର ଭାଙ୍ଗିଦେବ ଯେ... ଲାଗୁଚି ଯେମିତି ସେ ଦୁଆରକୁ ଚିରିଚାଲିଚି .... ଆଉ ଠକ୍‌ଠକ୍ ଶୁଭୁନି, କହିଲିନା, ଯାଇକରି ଦେଖ ଟିକେ ...।

ଆଉ ଯଦି ସେ ତୁମ ହଜ୍‌ବ୍ୟାଣ୍ଡ ହେଇଥାଆନ୍ତି ।

ଦୁହେଁ ଦୁହିଁଙ୍କୁ ଚିନ୍ତାଗ୍ରସ୍ତ ଅବସ୍ଥାରେ ଚାହିଁରହିଲେ ।

ହଉ.... ଯାହା ହବାକଥା ହବ ଭାବି ସେ ଉଠିଲା ।

ଯଦି ଆଉ କେହି ହେଇଥାଆନ୍ତି ।

ସେ ତୁମକୁ ମୋ ସ୍ୱାମୀ ବୋଲି ଭାବିବ । ତାଙ୍କୁ କେହି ଏଠାରେ ଏତେ ଜାଣିନାହାନ୍ତି । ସେ ତ ମାସମାସକାଳ ଦୂରରେ ରହନ୍ତି ।

ସେ କିଛିଟା ଆଶ୍ୱସ୍ତ ହେଲା । ଶେଷରେ ସେ ଯାଇ କବାଟ ଖୋଲିଲା । ଗୋଟେ କୁକୁର ଜୋର୍‌ରେ ଘରଭିତରକୁ ଝପ୍‌ଟି ଆସିଲା ... ଆଉ ସିଧା ବିଛଣା ଆଡକୁ ଦୌଡିବାରେ ଲାଗିଲା । ସେ କେବଳ ଅନେଇ ରହିଥିଲା ... ଓଃ ଏଇ ତେବେ ... । ହଁ ଜ୍ୟାକି.... ସେତେବେଳକୁ କୁକୁର ଅତି ଆନନ୍ଦରେ ତା' କୋଳରେ ମୁହଁ ଗୁଂଜି ସାରିଥିଲା, ସେ ବି କୁକୁରକୁ ଜାକି ଧରିଥିଲା, କୁକୁର ଖୁସିରେ ତା' ଚଦରକୁ ଏଆଡେ ସେଆଡେ ଖସାଇ ଦେଇଥିଲା । ସେ କେଉଁଠି ଥିଲା ନଗ୍ନ ତ କେଉଁଠି ଅର୍ଦ୍ଧନଗ୍ନ ଅବସ୍ଥାରେ ହସି ହସି ସେ ତାକୁ ଓ ଜ୍ୟାକିକୁ ଦେଖିବାରେ ଲାଗିଥିଲା ... ପୁଣି କାନ୍ଥଉପରେ ଲାଗିଥିବା ନ୍ୟୁଡ୍ ପେଣ୍ଟିଂକୁ ଅନାଉଥିଲା । କୁକୁର ପାଇଁ ଆଜି ସେ ବେଡ୍‌ରୁମ୍‌କୁ ଭଲଭାବେ ଦେଖିବାର ସୁଯୋଗ ପାଇଥିଲା ... ନହେଲେ

ସମୟ କାହିଁତାକୁ... ବେଡ୍‌ରୁମ୍ ଦାମୀ ଜିନିଷରେ ଭର୍ତ୍ତି । ପ୍ରାୟ ସମସ୍ତ ବିଦେଶୀ । ସାମ୍ନା କାନ୍ଥରେ ତାଙ୍କର ଏକ ବଡ ପୋଟ୍ରେଟ୍ ଲାଗିଥିଲା । କୁକୁରକୁ ଆଉ ବେଶୀ ସମୟ ନଦେଇ ସେ ପଚାରିଲା – ଏହାକୁ କେଉଁ ପେଣ୍ଟର୍ ବନେଇଚି ?

ମୋର ନାଁ ମନେନାହିଁ । ଏ ତିଆରି କରେଇଥିଲେ ପଚାଶ ହଜାର ଦେଇ ... ସେ ପେଣ୍ଟର ୟାଙ୍କର ସାଙ୍ଗ .... ଖୁବ୍ ଅସୁବିଧାରେ ଥିଲା ସେତେବେଳେ .... ବହୁତ ସୁନ୍ଦର ପୋଟ୍ରେଟ୍ ବନେଇଚି ।

ସେଇଥିପାଇଁ ତ କହୁଚି – ତାଙ୍କର ମୋ ଉପରେ ନୁହଁ, ମୋ ସୌନ୍ଦର୍ଯ୍ୟ ଉପରେ ସନ୍ଦେହ । ସେ ହସିଲା ।

ଜ୍ୟାକି ଶାନ୍ତ ହେଇଆସିଥିଲା । ଆଉ ନିଜେ ବେଡ୍‌ରୁ ଓହ୍ଲେଇ ଆସିଥିଲା । ଜ୍ୟାକି ତାଙ୍କୁ ଦେଖି ଭୁକିବାରେ ଲାଗିଲା ।

ଜ୍ୟାକି ... ନୋ ..., କିଂତୁ ଜ୍ୟାକି ତାଙ୍କୁ ଦେଖି ବେଶୀ ଭିକିବାରେ ଲାଗିଲା ।

ଆମେ କେତେ ଡରିଯାଇଥିଲେ ସତେ ! କହିକହି ସେ ବେଡ୍ ଉପରକୁ ଉଠି ଦୁଇବାହୁରେ ତାକୁ ଜଡେଇ ଧରିଲା । ପୁଣି ଗୋଲାପୀ ବିଜୁଳି ଚମକିଲା ।

କିସ୍‌ମିସ୍ ଏକ ... କିସ୍‌ମିସ୍ ଦୁଇ...

ସେ ବେଡ୍ ତଳକୁ ହାତବଢେଇ ରେଡ୍ ୱାଇନ୍ ବୋତଲକୁ ଟାଣିନେଲା । ବୋତଲକୁ ଟେକି ସିଧା ଦୁଇ ତିନି ଥର ଘଟ୍ ଘଟ୍ କରି ପିଇନେଲା । ୱାଇନ୍ ଭିଜା ଓଠକୁ ଓଠରେ ଲଗାଇ ଘନଘନ ଚୁମିବାରେ ଲାଗିଲା ... ଜ୍ୟାକି ଭୁକିଲା ।

କମ୍ ଟୁ ମି ...

ରେଡ୍ ରମ୍ ଲେଖିଦେବି ...

ଲେଖ, ଲେଖ...ଓଃ...ଉଃ...

ତା' ଶରୀରରେ ପୁଣି ଜ୍ୱାଳାମୁଖୀ ଜଳିଉଠୁଥିଲା ।

ଖୁବ୍ ବେଗରେ ଦଉଡି ଚାଲିଥିଲା ଘୋଡା ।

ଜ୍ୟାକି ଲଗାତର ଜୋର୍‌ରେ ଶବ୍ଦକରି ଭୁକିଚାଲିଥିଲା ।

ଓଃ...ୟା' ପାଟି ବନ୍ଦକର...

ଜ୍ୟାକୀ, ନୋ...ନୋ...

କିଂତୁ ଜ୍ୟାକି ଭୁକି ଚାଲିଥିଲା .... ସମସ୍ତ ଜ୍ୱାଳାମୁଖୀ ଫଟ୍‌ଫଟ୍ ହେଇ ଶାନ୍ତ ହେଇଆସିଥିଲେ । ସବୁ ଘୋଡା ଦୌଡି ଦୌଡି ଥକି ପଡିଥିଲେ । ଆଉ ଗୋଲାପୀ ବିଜୁଳିପୋକ ଘଷିହେଇ ମରିଯାଇଥିଲା ।

ଜ୍ୟାକି ଚାରି ମହାନଗରୀରେ ଭୁକି ଚାଲିଥିଲା । ଚାରି ମହାନଗରୀର ତାପମାତ୍ରା ସେ ଦିନ ସେଇ ସମୟରେ ଥିଲା ପ୍ରାୟ ସମାନ ! ଗୋଲାପୀ ଜୁଳୁଜୁଳିଆ ପୋକ ଚମକି ଚାଲିଥିଲେ... ଜ୍ୱାଳାମୁଖୀର ଉଦ୍‌ଗୀରଣ ହେଉଥିଲା ଓ ଜ୍ୟାକି ଭୁକି ଚାଲିଥିଲା...।



କମଲେଶ୍ୱର (ଜନ୍ମ: ୬ ଜାନୁଆରୀ ୧୯୩୨, ଉତ୍ତର ପ୍ରଦେଶର ମୈନପୁରୀଠାରେ)

କଥାସାହିତ୍ୟ : ୧୨ଟି କାହାଣୀ ସଂଗ୍ରହ, ୧୦ଟି ଉପନ୍ୟାସ, ଏବଂ ଯାତ୍ରାବିବରଣୀ, ଆଲୋଚନା, ଆତ୍ମକଥା ଆଦି ଅନ୍ୟାନ୍ୟ ୨୦ଟି ପୁସ୍ତକ ।

ସମ୍ପାଦନା : ନୟୀ କହାନୀ, ସାରିକା, ଗଂଗା, କଥାଯାତ୍ରା, ଇଙ୍ଗିତ, ଶ୍ରୀବର୍ଷା, ଦୈନିକ ଜାଗରଣ ଆଦି ପତ୍ରିକାର ସମ୍ପାଦକ ଓ 'ଦୈନିକ ଭାସ୍କର'ର ମୁଖ୍ୟ ସମ୍ପାଦକ । ଭାରତୀୟ ଦୂରଦର୍ଶନର ପ୍ରଥମ ସ୍କ୍ରିପ୍ଟ ରାଇଟର, ଦୂରଦର୍ଶନର ଆଡିସିନାଲ ଡାଇରେକ୍ଟର ଜେନେରାଲ ।

ଧାରାବାହିକ 'ଚନ୍ଦ୍ରକାନ୍ତା', 'ବେତାଲ୍ ପଚିଶୀ', 'ଦର୍ପନ୍', 'ରେତ୍ ପର୍ ଲିଖେ ନାମ୍', 'ଆକାଶ ଗଙ୍ଗା', 'ବିରାଟ୍', 'ବିକ୍ଷରେ ପନ୍ନେ'ର ସ୍କ୍ରିପ୍ଟ ଲେଖକ । 'ମିଃ ନଟବର ଲାଲ', 'ଦି ବର୍ଣ୍ଣିଙ୍ଗ ଟ୍ରେନ୍', 'ଅମାନୁଷ୍', 'ସାରା ଆକାଶ', 'ଫିର୍‌ଭୀ', 'ଉସ୍‌କେ ବାଦ୍', 'ରାମ୍ ବଲ୍‌ରାମ୍', 'ମୌସମ୍', 'ସୌତନ୍', 'ଆଁଧୀ', 'ପତି ପତ୍ନୀ ଔର୍ ୱହ' ଆଦି ଶତାଧିକ ହିନ୍ଦୀ ଫିଲ୍ମର ସ୍କ୍ରିପ୍ଟ ଲେଖକ ।






ଅନୁବାଦକ : ସୁରେନ୍ଦ୍ର ପାଣିଗ୍ରାହୀ
ଜନ୍ମ - ୧୯୬୧ ବାଲେଶ୍ୱର ଜିଲ୍ଲାର ବରି ଗ୍ରାମରେ
ପ୍ରକାଶିତ ପୁସ୍ତକ : ମେଘ ମେଘ ଆକାଶ (୨୦୦୨)
କିଆ କେତକୀର କବିତା (୨୦୦୪)
କବିତା, ଅନୁବାଦ ଓ ଫିଚର ବହୁ ପତ୍ରପତ୍ରିକାରେ ପ୍ରକାଶିତ ।

cover design: saroj bal